# ଅଦ୍ରିରମା

## ଓ

# ସଂସାରଚକ୍ର



ଦ୍ୱିତୀୟ ଭାଗ ।

ଶ୍ରୀ ଲାଲମୋହନ ମହାପାତ୍ରଙ୍କଦ୍ୱାରା ପ୍ରଣୀତ

ଓ

ପ୍ରକାଶିତ ।

ପ୍ରଥମ ସଂସ୍କରଣ ।



Printed by B. Sarangi.
THE ORISSA PATRIOT PRESS.
MAHAMMADIA BAZAR,
CUTTACK
1916.

ମୂଲ୍ୟ ୫ ୦୵

# ଭୂମିକା ।



ବାଲ୍ୟାବସ୍ଥାରେ ମୁଁ ପାଠ୍ୟପୁସ୍ତକ ଭିନ୍ନ ବେଳେବେଳେ ଅନ୍ୟ ପୁସ୍ତକ ପଢୁଥିଲି ଏବଂ ଯେଉଁ ପୁସ୍ତକ ପଢୁଥିଲି ତାହା ଶେଷ ନ କରି ଅନ୍ୟ ପୁସ୍ତକ ପଢୁ ନ ଥିଲି । ସେହି ପୁସ୍ତକ ପଢ଼ିବାର ଅଭ୍ୟାସ ଯୌବନରେ ମଧ୍ୟ କେତେକବର୍ଷ ପର୍ଯ୍ୟନ୍ତ ରହିଥିଲା ସୁତରାଂ ମୁଁ ଯେତେବେଳେ କାର୍ଯ୍ୟରୁ ଅବସର ପାଉଥିଲି କୌଣସି ପୁସ୍ତକ ପାଠକରୁଥିଲି । ଅବଶେଷରେ ଅନ୍ୟ ପୁସ୍ତକ ପାଠ ନ କରି କେବଳ ଜ୍ୟୋତିଷ ଶାସ୍ତ୍ର ଅଧ୍ୟୟନ କରିବାରେ ଅବକାଶ-ସମୟ ଅତି ବାହିତ କଲି । ଏହିପରି କୌଣସି ଦିନ ଶ୍ରୀଏ ଜ୍ୟୋତିଷଗ୍ରନ୍ଥ ପାଠକରୁଥିଲି, ଏହି ସମୟରେ ମୋହର କନିଷ୍ଠଭ୍ରାତା କହିଲେ "ଜ୍ୟୋତିଷ ଶାସ୍ତ୍ରପଢି କଅଣ କରିବ, ତହିଁରେ କାଳକ୍ଷେପଣ ନ କରି ଯଦି ସରଳଭାଷାରେ କୌଣସି ବିଷୟ ଲେଖିବ ତାହାହେଲେ ଭାଷାର ଉତ୍କର୍ଷ ସାଧିତ ହେବ"। ଏହି କଥାଟି ମନରେ ଭାବାନ୍ତରଉପସ୍ଥିତ କରାଇଲା ସୁତରାଂ ମୁଁ ସେହିଦିନଠାରୁ ମାନବଜୀବନୀସ୍ୱରୂପ ଏହି ଅରିନ୍ଦମ ପୁସ୍ତକଖଣ୍ଡି ଲେଖିବାରେ ପ୍ରବୃତ୍ତ ହେଲି । ବର୍ତ୍ତମାନ ଦ୍ୱିତୀୟଖଣ୍ଡ ପ୍ରକାଶିତ ହୋଇ ଭକ୍ତିର ସହିତ ଜନ ସାଧାରଣରେ ଅର୍ପିତ ହେଲା । ଇତି ।

ରାଜ୍ କନିକା
ତା ୨୪।୮।୧୭ } ଶ୍ରୀ ଲାଲମୋହନ ମହାପାତ୍ର ।

# ସୂଚୀପତ୍ର ।









୧ମ ଭାଗ ।

'ଜଗତ୍କର୍ତ୍ତା' ପରମପିତା ପରମେଶ୍ୱର ଅଦ୍ଭୁତ ସୂତ୍ରଧାର, ସେ ସମସ୍ତ ସଂସାରର ସ୍ରଷ୍ଟା ଓ ନିୟନ୍ତା ଅଟନ୍ତି । ତାହାଙ୍କ ସୃଷ୍ଟିରେ ସମସ୍ତ ପରିବର୍ତ୍ତନଶୀଳ କେବଳ ତାହାଙ୍କର ନିୟମ ଅପରିବର୍ତ୍ତନୀୟ । କେହ କେହ ବିଜ୍ଞାନବିତ୍ କହନ୍ତି ଯେ ପ୍ରକୃତି ବା ଈଶ୍ୱରର ନିୟମାନୁସାରେ ସମସ୍ତ କାର୍ଯ୍ୟ ଘଟୁଅଛି ;— ଯଥା ପଞ୍ଚଭୂତ ସେମାନଙ୍କର ଗୁଣାନୁଯାୟି ନିଜ ନିଜ କାର୍ଯ୍ୟ କରୁଅଛନ୍ତି, ଷଡ଼ରିପୁ ସେମାନଙ୍କର ସମୟାନୁସାରେ କାର୍ଯ୍ୟ କରୁଅଛନ୍ତି ଆଉ ମାନବଠାରୁ ମାନବ, ପଶୁଠାରୁ ପଶୁ, ପକ୍ଷୀଠାରୁ ପକ୍ଷୀ, ସରୀସୃପଠାରୁ ସରୀସୃପ ଏବଂ ଉଦ୍ଭିଦ

ଠାରୁ ଉଦ୍ଭିଦ ଜାତ ହେଉଅଛନ୍ତି । ଏହିପରି ନାନାକାରଣ ଦର୍ଶାଇ ସକଳ ସଂସାରର ମୂଳାଧାର ଅସୀମ କ୍ଷମତାଶାଳୀ ଅନାଦିକାରଣ ଅଦ୍ଭୁତକୌଶଳୀ ମହାମହେଶଙ୍କର ଅସ୍ତିତ୍ୱ ସ୍ୱୀକାର ବିଷୟରେ କୁଣ୍ଠିତ ହୁଅନ୍ତି କିନ୍ତୁ ତାହା ନୁହେଁ, ଆମ୍ଭେମାନେ ସାଧାରଣରେ ଦେଖୁଅଛୁଁ ଯେ ରାଜା ବା ଶାସକ ନଥିଲେ ରାଜ୍ୟରେ ନାନାପ୍ରକାର ବିଶୃଙ୍ଖଳା ଘଟେ ଏବଂ କୌଣସି ଗୃହ ଚଳାଇବା ପାଇଁ ଗୋଟିଏ ଗୃହସ୍ୱାମୀଙ୍କର ଆବଶ୍ୟକ ଏବଂ ସାମାନ୍ୟ ଗୋଟିଏ ଉଦ୍ୟାନ ରକ୍ଷା କରିବା ପାଇଁ ତାହାର ରକ୍ଷକ ଆବଶ୍ୟକ, ଏହିପରି ଯେ କୌଣସି ଗୁରୁତର ବା ସାମାନ୍ୟ ବିଷୟ ହେଉନା କାହିଁକି ପ୍ରତ୍ୟେକର ଜଣେ ଜଣେ କର୍ତ୍ତା ଅଛନ୍ତି ତେବେ ଜଣେ ମହାଚାଳକ ବ୍ୟତୀତ ଯେ ଏହି ଅସୀମ ସଂସାର ଚଳୁଅଛି ଏହା ଏକାବେଳକେ ଅସମ୍ଭବ ସୁତରାଂ ତାହାର ଜଣେ ପ୍ରଧାନ କର୍ତ୍ତା ଅଛନ୍ତି, ସେହି କର୍ତ୍ତା ହିଁ ଜ୍ଞାନଗମ୍ୟ ଅଖିଳକାର୍ଯ୍ୟକାରଣ ସର୍ବବ୍ୟାପକ ବିଧାତା ଅଟନ୍ତି ! ଯେପରି ସୂତ୍ରଧର ଅଭିନୟ କାର୍ଯ୍ୟ ସାଧନ କରିବା ପାଇଁ ଅଭିନୟ କ୍ଷେତ୍ରକୁ ଏକ ଏକ ଜଣ ପଠାଏ ସେହିପରି ପରମେଶ୍ୱର ତାହାଙ୍କର କାର୍ଯ୍ୟ ସାଧନପାଇଁ ପ୍ରତ୍ୟେକଙ୍କୁ ଭବରଙ୍ଗଭୂମିକୁ ପଠାଉଅଛନ୍ତି, ନିଜ ନିଜର କାର୍ଯ୍ୟ ଶେଷହେଲା ଉତ୍ତାରୁ ଅବଶେଷରେ ଦିନେ ସମସ୍ତଙ୍କୁ ଏହି ରଙ୍ଗଭୂମି ପରିତ୍ୟାଗ କରିବାକୁ ହେବ ।

ଏହିପରି ପରମେଶ୍ୱରଙ୍କଦ୍ୱାରା ଆଦିଷ୍ଟ ଓ ପ୍ରେରିତ ହୋଇ ଯେତେବେଳେ ପ୍ରାଣୀ ଗର୍ଭବାସାନନ୍ତର ଭୂମିଷ୍ଠ ହୁଏ ତେବେ

ବେଳେ ସେ ଚତୁର୍ଦ୍ଦିଗକୁ ନିରୀକ୍ଷଣ କରିବାର ସମସ୍ତେ ଦେଖନ୍ତି କିନ୍ତୁ ସେ ନିରୀକ୍ଷଣକାରି ତାହାର ମନରେ କଅଣ ଭାବେ କିଅଁତ ନ ଭାବ ସ୍ଥିରକରିବା ସୁକଠିନ, କାରଣ ପ୍ରାଣୀ କ୍ରମେ ଯେତେ ବୃଦ୍ଧି ପାଉଥାଏ ଈଶ୍ୱରଙ୍କଠାରୁ ସେହି ପରିମାଣରେ ଦୂରବର୍ତ୍ତୀ ହୋଇଥାଏ ସୁତରାଂ ଶୈଶବାବସ୍ଥାର ପବିତ୍ର ଓ ସରଳ ଭାବ ପୌଗଣ୍ଡରେ ନ ଥାଏ ସେହିପରି ପୌଗଣ୍ଡର ଭାବ କୈଶୋରରେ ଓ କୈଶୋରର ଭାବ ଯୌବନରେ ନ ଥାଏ । ଏହିପରି ଭାବ ଓ ମାନସିକବୃତ୍ତି ସକଳ ଅବସ୍ଥାନ୍ତର ସଙ୍ଗେ ସଙ୍ଗେ କ୍ରମେ୨ ପରିବର୍ତ୍ତିତ ହେଉଥାନ୍ତି । ଶୈଶବର ଭାବଠାରୁ ବର୍ତ୍ତମାନ ଅର୍ଥାତ ଯୌବନ ବା ବାର୍ଦ୍ଧକ୍ୟର ଭାବ ଅନେକ ଦୂରବର୍ତ୍ତୀ ସୁତରାଂ ଭୂମିଷ୍ଟହେଲା ଉତ୍ତାରୁ ଶିଶୁ ଯେ କଅଣ ଭାବେ ଏହା କାହାର ସ୍ମରଣ ନ ଥାଏ କେବଳ କଳ୍ପନାଦ୍ୱାରା ଯେତେଦୂର ସମ୍ଭବ ସ୍ଥିରକରାଯାଇ ପାରେ :—

## ଶିଶୁର ଭାବନା ।

କାହିଁ ମୁଁ ଥିଲି କାହିଁ ଆଇଲି ।
କି ଅଦ୍ଭୁତ ଏହା ଦେଖିଲି । ୧ ।
କିଏ ଆଣିଲା କାହିଁ ଥୋଇଲା ।
କିପାଇଁ ମୋତେ ଏଥେଁ ଆଣିଲା । ୨ ।
କିସ କରିବି କେବେ ଫେରିବି ।
ଘୋର ବିପଦେ କିନା ଭସିବି । ୩ ।

'ନା ନା' ଯାହାର ଆଦେଶେ ଧାଇଁ—
ଆସିଛୁ ସେହୁ ରଖିବେ ସାଇଁ । ୪ ।
ଏଠାରେ ତାଙ୍କୁ ମୋର ପ୍ରଣତି ।
* ସାଧିବ ହୋଇ ତତ୍ପର ଅତି । ୫ ।
ଏହାହିଁ ମୋର ହେଉଛି ଲକ୍ଷ ।
ନୋହିଲେ ମୁହିଁ ହେବି ଅଦକ୍ଷ । ୬ ।

ଶିଶୁ ସନ୍ତାନ ଉର୍ଦ୍ଧ୍ୱମୁଖରେ ଶାୟିତ ଥିବା ସମୟେ ଚତୁର୍ଦ୍ଦିଗକୁ ନିରୀକ୍ଷଣକର ସମୟେ କ୍ରନ୍ଦନ କରେ ଓ ସମୟେ ଅଧରୌଷ୍ଠ ବିସ୍ତାରିତ କରି ପ୍ରସ୍ଫୁଟିତ ପୁଷ୍ପପ୍ରାୟ ମଧୁର ମଧୁର ହାସ ପ୍ରକାଶ କରିବାଦ୍ୱାରା ଜନକ ଜନନୀ ଭ୍ରାତା ଓ ଭଗିନୀଙ୍କୁ ଅସୀମ ଆନନ୍ଦସାଗରରେ ଉଦ୍ଭାସିତ କରାଏ । କ୍ରନ୍ଦନ କରେ କାହିଁକି ? କ୍ଷୁତ୍ପିପାସାଦ୍ୱାରା ପ୍ରପୀଡ଼ିତ ହୋଇ ପ୍ରାଣଦାୟିନୀ ବିପଦ ହାରିଣୀ ସନ୍ତାନାର୍ଥ ସକଳସୁଖତ୍ୟାଗିନୀ ସ୍ନେହମୟୀ ଜନନୀ-ଦେବୀଙ୍କଠାରେ ସ୍ତନ୍ୟଭିକ୍ଷା କରେ । ଶିଶୁ ହସି ଉଠେ କାହିଁକି ? କୌଣସି ପ୍ରକାର ଆନନ୍ଦୋଦ୍ଭବ ହାସର କାରଣ ହୁଏ ସୁତରାଂ ଯେତେବେଳେ ସେ ମହାମହିମ ମହେଶ୍ୱରଙ୍କର ମହିମା ଅନୁଭବ କରେ, ଯେତେବେଳେ ଅସୀମ ଆକାଶର ବିସ୍ତୀର୍ଣ୍ଣତା ଅବଲୋକନ କରେ, ଯେତେବେଳେ ଇନ୍ଦୁ ନଭୋମଣ୍ଡଳରେ ଦୁଗ୍ଧଫେନନିଭ କୋମଳକର ପ୍ରକାଶ କରି ସକଳ ସୃଷ୍ଟିକୁ ହାସୋନ୍ମୁଖ ପ୍ରାୟ କରିଦିଏ, ପ୍ରସ୍ଫୁଟିତ କୁମୁଦଦ୍ୱାରା ଶତ

* ସାଧିବ ଏହି କ୍ରିୟାର କର୍ମ ଆଦେଶର ବିଷୟ ।

ସରୋବର ଶୋଭିତ କରାଇ ମେଦିନୀ ମଣ୍ଡଳରେ ଶରତ ଚନ୍ଦ୍ରର ଆବିର୍ଭାବ କରାଏ, ମଲ୍ଲୀ, ମାଳତୀ, ମାଧବୀ ଆଦି ମନୋହର ବିକଚ କୁସୁମଦ୍ୱାରା ବିଭୂଷିତା ଅବନୀ ବନିତାଙ୍କୁ ସଦ୍ୟ ରଜକଗୃହାଗତ ଧବଳ ବସନତୁଲ୍ୟ ଶୁଭ୍ର ଚନ୍ଦ୍ରିକା-ଦ୍ୱାରା ଆଚ୍ଛାଦିତ କରି ଶୋଭା ସୁନ୍ଦରୀର ସୁମନ ସଂଗ୍ରହ ନିମିତ୍ତ ବୃକ୍ଷ ପାଦପ ମୂଳରେ ଛାୟାନ୍ତରାଳପତିତ ଜ୍ୟୋତ୍ସ୍ନା ହେତୁରୁ ଚନ୍ଦ୍ରକାନ୍ତ ଓ ଇନ୍ଦ୍ର ନୀଳମଣିଖଚିତ ପଥ୍ୟ ବିସ୍ତାରିତ କରେ, ଶିଶିର ରଜନୀର ଶୈତ୍ୟ ଓ ନିଦାଘ ରଜନୀର ଉଷ୍ଣତା ବସ୍ତୁ ପରିମାଣରେ ନଷ୍ଟକରି ଜଗତ ବାସି-ଙ୍କର ସୁଖ ସମ୍ପାଦନ କରେ, ସିନ୍ଧୁର ଜଳ ଶୋଷଣ ଭାବେ ଉଚ୍ଛ୍ୱସିତ କରି ସେଠାରେ ଭୟଙ୍କର ଗଣ୍ଡଗୋଳ ଜନ୍ମାଏ, ରାଜଭବନମଧ୍ୟଗତ କାଚପାତ୍ରାବୃତ ଦୋଦୁଲ୍ୟମାନ ଆଲୋକ ପରି ନଭୋମଣ୍ଡଳରେ ବିରାଜିତ ହୋଇ କୂଟବୁଦ୍ଧି ଦୁର୍ଜ୍ଜନ-ମାନଙ୍କୁ ଦୁରଭିସନ୍ଧି ସାଧନରୁ ନିବାରଣ କରେ, ଧର୍ମ୍ମପରାୟଣା ଶୋଭାସ୍ପଦନା ଲଜ୍ଜାଶୀଳା କୋମଳମତି ନାରୀଜାତି-ବଦନ-ଶୋଭାର ପରିମାପକ ହୋଇ ସବୁଙ୍କର ଭାବକଲ୍ଲୋଳ ଉତ୍ତୋ-ଳନ କରେ ତେତେବେଳେ ଶିଶୁ ହସିଉଠେ । କ୍ରମେ ଚନ୍ଦ୍ରର ଅବସାନ ହେବାରୁ ଅନ୍ଧକାରର ଆବରଣ କ୍ରମେ ଚତୁର୍ଦ୍ଦିଗ ଆଚ୍ଛନ୍ନ କରି ଆସିଲା, ବର୍ତ୍ତମାନ ଆଉ ସେ ଶୋଭା ନାହିଁ, ଯେପରି ସୁଖର ଅନ୍ତେ ଦୁଃଖର ଆବିର୍ଭାବ ହେଲେ ମାନବର ମନ ବିଷାଦ-ଛାୟାରେ ମଳିନ ହୁଏ ସେହିପରି ଧରାବାସୀ ଅନୁରୂପ ହୃଦୟରେ ନିଜ ନିଜ ଆବାସରେ

ଆଶ୍ରୟ ଗ୍ରହଣ କରୁ ଅଛନ୍ତି, ବର୍ତ୍ତମାନ ଆଉ ବାଳକମାନଙ୍କର ସେହି ସୁଖ କ୍ରୀଡା ନାହିଁ କିମ୍ବା ଆନନ୍ଦଜନକ ଗାୟନ ନାହିଁ, ଅନ୍ଧକାର ସମସ୍ତଙ୍କୁ ଅନ୍ଧ କରି ଦେଇ ଅଛି, କେବଳ କେତେକ ଦୁର୍ଜ୍ଜନ ଲୋକ ( ଈଶ୍ୱରଙ୍କ ନିୟମ ଭଙ୍ଗରୂପ ପାପକାର୍ଯ୍ୟର ଫଳ ଦିନେ ଭୋଗ କରିବାକୁ ହେବଲେ ସୁଦ୍ଧା ) ନିଜ ନିଜ କୁମନ୍ତ୍ରଣା କାର୍ଯ୍ୟରେ ପରିଣତ କରିବାକୁ ଅବକାଶ ପାଇ ଅଛନ୍ତି ଅର୍ଥାତ୍ କେହି ଅପର ଧନ ଆତ୍ମସାତ୍ କରିବାକୁ, କେହି ଶତ୍ରୁତା ସାଧନୋଦ୍ଦେଶ୍ୟରେ ଅପରର ଘରେ ଅଗ୍ନି ଦେବାକୁ କିମ୍ବା ଅନ୍ୟକୁ ଭୀଷଣଭାବରେ ଆଘାତ କରିବାକୁ ବହିର୍ଗତ ହୋଇ ଅଛନ୍ତି କିନ୍ତୁ ପ୍ରକୃତ ଲୋକ ଏହି ଘୋର ପରିବର୍ତ୍ତନ ବିଷୟ ଭାବି ଈଶ୍ୱରଙ୍କ ଲୀଳା ହୃଦୟଙ୍ଗମ ପୂର୍ବକ ତାହାଙ୍କୁ ଧନ୍ୟବାଦ ଦେଉ ଅଛି, କେଉଁଠାରେ ପ୍ରକୃତ ବସ୍ତୁ ଆଦୌ ଜଣା ପଡ଼ୁ ନାହିଁ କାହିଁବା ପ୍ରକୃତ ବସ୍ତୁ ଏକ ଭୀଷଣ ଆକାର ଧାରଣ କରି ଭୟର କାରଣ ହେଉଅଛି, ଆକାଶରେ ତାରାମଣ୍ଡଳ ବିରାଜିତ ହୋଇ ବିଷ୍ଣୁଙ୍କ ଶ୍ରୀଅଙ୍ଗରେ ଚନ୍ଦନ ବିନ୍ଦୁ ପ୍ରାୟ କିମ୍ବା ଇନ୍ଦ୍ରଙ୍କ ଦେହରେ ସହସ୍ର ଲୋଚନ ତୁଲ୍ୟ ଶୋଭା ପାଉ ଅଛନ୍ତି ଅଥବା ଯମୁନା ନଦୀର ଶତ ଫେନପୁଞ୍ଜ ତୁଲ୍ୟ ଶୋଭମାନ ହେଉ ଅଛନ୍ତି ଏବଂ ନାବିକମାନଙ୍କୁ ଦିଗ ନିର୍ଦ୍ଦେଶ ପୂର୍ବକ ନୌକାଚାଳନର ପଥ ସ୍ଥିର କରି ଦେଉ ଅଛନ୍ତି ଓ ଗଣକମାନଙ୍କୁ ରାଶିର ମାନ ନିର୍ଦ୍ଦେଶ କରି ଦେଉ ଅଛନ୍ତି ଏବଂ ନିର୍ମ୍ମଳ ନଭୋମଣ୍ଡଳରେ ପୁଞ୍ଜ ପୁଞ୍ଜ ଭାବେ ଅବସ୍ଥାନ କରି ଥିବାରୁ ପ୍ରକୃତିର ଚନ୍ଦ୍ରାତପଶୋଭା ସମ୍ପାଦନ କରୁଅଛନ୍ତି

ପୁନଶ୍ଚ *ରଙ୍ଗମଲ୍ଲୀ ପୁଷ୍ପ ଗୁଚ୍ଛର ଶୋଭା ଧାରଣ କରି ପ୍ରକୃତି ସୁନ୍ଦରୀର ବ୍ୟୋମରୂପ ସୁନୀଳ ଚିକୁର ମଣ୍ଡିତ କରୁଅଛନ୍ତି; କେବେ୨ ଜ୍ୟୋତିର୍ମୟ ଲୁମ୍ବିତାକାର ଧୂମକେତୁ ଗଗନ ସରୋବରରେ ଉଦିତ ହୋଇ ଜଗଦ୍‌ବାସୀଙ୍କ ମନରେ ମହା ଭୟର ସଞ୍ଚାର କରୁଅଛି । ତଦନନ୍ତର କ୍ରମେ ରାତ୍ରିର ଅବସାନ ହୁଅନ୍ତେ ନୌଲୁବ୍ଧକ କର୍ତ୍ତୃକ ତେଣ୍ଟାଦ୍ୱାରା ବିଦ୍ଧ ହୋଇଥିବା ତିମି ମତ୍ସ୍ୟ ଦେହରୁ ଶୋଣିତ ନିଃସୃତ ହୋଇ ସାଗର ବକ୍ଷ ଆରକ୍ତ କଲାପ୍ରାୟ ଅରୁଣିମା ପୂର୍ବାକାଶ ଶୋଣିତାୟମାନ କରିବାରୁ ସାଗରର ଅନ୍ୟାନ୍ୟ ଭୟପ୍ରାପ୍ତ ଜଳଜନ୍ତୁ ପ୍ରାୟ ନିଶା ତମିସ୍ରା ରବି ବାଧ ଭୟରେ କ୍ରମେ ଅନ୍ତର୍ହିତ ହେବାକୁ ଚେଷ୍ଟା କରୁଅଛି, ରବିର ସମ୍ପୂର୍ଣ୍ଣ ପ୍ରକାଶାନନ୍ତର ତମିସ୍ରା ପଲାୟନ କରି ସାଗରାଭ୍ୟନ୍ତରସ୍ଥ ପର୍ବତ କନ୍ଦର ତୁଲ୍ୟ ସର୍ପଚର୍ମ ଓ ପର୍ବତ ଗୁହାରେ ଆଶ୍ରୟ ଗ୍ରହଣ କରୁଅଛି, ବୈତାଳିକ ଓ ବୀଣା ପ୍ରଭୃତି ବାଦ୍ୟ ଯନ୍ତ୍ରସହ ସଙ୍ଗୀତ ରସାଭିଜ୍ଞ ଲୋକମାନେ ସ୍ତୁତି ଗାନଦ୍ୱାରା ରାଜପୁରୁଷମାନଙ୍କୁ ପ୍ରାତଃ କାଳରେ ଜାଗରୁକ କଲାପ୍ରାୟ କୁକ୍କୁଟ, କାକ, ପିକ ଓ କପୋତ ପ୍ରଭୃତି ପକ୍ଷିମାନେ ସକଳ ଧରାବାସିଙ୍କୁ ସୁଖଶୋକ ଦାୟିଣୀ ସ୍ୱପ୍ନଲବ୍ଧ ଅଲୀକ ସୁଖ ଦୁଃଖ କାରିଣୀ ବିରାମ ଦାୟିନୀ ନବୀନ ବଳବିଧାୟିନୀ ନିଦ୍ରା କୋଳରୁ ଉତ୍ଥାପିତ କରାଉ ଅଛନ୍ତି । ବର୍ତ୍ତମାନ ଚରାଚର ଅଲୋକିତ ହେଲା,

* ରଙ୍ଗମଲ୍ଲୀ— ବ୍ରଜମଲ୍ଲୀ ।

ଉଷ୍ଣର, ଜଳଚର ପ୍ରଭୃତି ପ୍ରାଣୀ ଭଲ ସଙ୍ଗେ ଉପୃତ୍ତିମୁକ୍ତ ହୋଇ ନବୋଦ୍ୟମରେ ଚତୁର୍ଦ୍ଦିଗରେ ଭ୍ରମଣ କଲେ ଏବଂ ସ୍ୱ ସ୍ୱ କର୍ତ୍ତବ୍ୟ କାର୍ଯ୍ୟରେ ବଦ୍ଧିଗତ ହେଲେ । ଉଦ୍‌ଭିଦମାନଙ୍କର ସୂର୍ଯ୍ୟ ତାପରୁ ନିଜର ଆବଶ୍ୟକୀୟ ଅଂଶ ସଂଗ୍ରହ କରି ପରିବର୍ତ୍ତିତ ହେବାକୁ ଲାଗିଲେ, ସାଗର ମଧ୍ୟରେ ଓ ବାୟୁ ମଣ୍ଡଳରେ ତାଙ୍କର ସ୍ରୋତର ସଞ୍ଚାର ହେଲା, ଜ୍ଞାନାଲୋକ ତୁଲ୍ୟ ଅଲୋକରେଖା ଛିଦ୍ରଦ୍ୱାରା ଗୃହାଭ୍ୟନ୍ତରକୁ ପ୍ରବେଶ କରି କୋଟି କୋଟି ଜୀବାଣୁର ପରିତୃପ୍ତି ହେଲା, ନବ କମଳୀୟ ସୌରକର ପ୍ରାପ୍ତ ହୋଇ ମୁଦ୍ରିତଶତଦଳୀ ପଦ୍ମିନୀ ନାଗର ଅଳଙ୍କାର ଲିପ୍ତ କରକମଳ ପ୍ରାପ୍ତ ଶୋଭା ପାଇଲା, ବନ୍ଧୁର ଆଗମନରେ ବନ୍ଧୁର ହୃଦୟ ଉତ୍ଫୁଲ୍ଲ ହେଲାପ୍ରାୟ ନିମିଳିତ ପୁଣ୍ଡରୀକ ସୂର୍ଯ୍ୟ ଦର୍ଶନରେ ଉନ୍ମୀଳିତ ହୋଇ ଜଗତର ଅସମ୍ପୂର୍ଣ୍ଣ ଶୋଭାକୁ ସମ୍ପୂର୍ଣ୍ଣ କରି ସକଳ ଶୋଭାର୍ଣ୍ଣବର ମକ-ଷୋପଲ ପରି ବିରାଜିତ ହେଲା, ହ୍ରଦ ନଦୀ ପୁଷ୍କରିଣୀର ଜଳ ଜଳାନ୍ତର ପ୍ରାପ୍ତ କ୍ରମେ ବାଷ୍ପାକାର ଧାରଣ କଲା, ବିଶେଷରେ ସାଗରର ଲବଣାକ୍ତ ଜଳ ନିଜର ଲବଣାଂଶ ପରିତ୍ୟାଗ କରି ସାଧୁ-ସଂସର୍ଗରେ ଅସାଧୁ ନିଜର ରଜଃ ଓ ତମୋଗୁଣ ପରିତ୍ୟାଗ ପୂର୍ବକ ଈଶ୍ୱରଙ୍କ ଭାବରେ ତନ୍ମୟ ହେଲା ପ୍ରାୟ ବାୟୁମଣ୍ଡଳରେ ମିଶ୍ରିତ ହେଲା ( ପରମେଶ୍ୱର ସାଗରର ଲବଣାକ୍ତ ଜଳ ମିଷ୍ଟ ଜଳରେ ପରିଣତ କରିବା ସକାଶ ଏପରି ଗୋଟିଏ ସୁନ୍ଦର ଯନ୍ତ୍ର ପ୍ରସ୍ତୁତ କରି ଅଛନ୍ତି ); ଜ୍ଞାନା-ଲୋକଦ୍ୱାରା ହୃଦୟ-ମନ୍ଦିର ଆଲୋକିତ ହେଲେ ଯେପରି

ଅଜ୍ଞାନ ତାମସ ଅନ୍ତର୍ହିତ ହୁଏ ଓ ସତ୍ତ୍ୱେସୁ ଦସ୍ୟୁର ପଳାୟନ କରନ୍ତି ସୁତରାଂ ହୃଦୟର ପ୍ରକୃତ ବସ୍ତୁ ( ସାଧୁଭାବ ) ପ୍ରକାଶିତ ହୁଏ ସେହିପରି ସୌରକରର ଆବିର୍ଭାବ ହେତୁରୁ ଅନ୍ଧକାର ପଳାୟନ କରି ଖଳଲୋକର ହୃଦୟତୁଲ୍ୟ ସର୍ପ ଗର୍ତ୍ତରେ ପଙ୍କ କନ୍ଦରରେ ଓ ଶୁଷ୍କ କୂପରେ ଆଶ୍ରୟ ଗ୍ରହଣ କରନ୍ତେ ସକଳ ହୃଷ୍ଟ ଜୀବ ଚତୁର୍ଦ୍ଦିରେ ନିଜ ନିଜ ଆଶ୍ରୟ ତ୍ୟଜିଲେ ସୁତରାଂ ବର୍ତ୍ତମାନ ଆଉ ସର୍ପର ଭୟ ନାହିଁ, ତସ୍କରର ଭୟ ନାହିଁ, ବ୍ୟାଘ୍ର ଓ ଭଲ୍ଲୁକର ଭୟ ନାହିଁ ତମ୍ଭା ଭୂତ ପ୍ରେତ ଡାଆଣୀ ଓ ଚନ୍ଦକୁଣୀ କୌଣସି ପ୍ରକାର ଭୟନାହିଁ; ସକଳ ବସ୍ତୁ ସୁପ୍ରକାଶିତ, ସର୍ବେ ସର୍ବ ପ୍ରକାର ଭୟବିମୁକ୍ତ ହୋଇ ନିଜ ନିଜ କର୍ତ୍ତବ୍ୟ କାର୍ଯ୍ୟରେ ରତ, ଜଗତର ଜୀବନ ଯଷ୍ଟି ସ୍ୱରୂପ ସକଳ ପ୍ରକାର ଶସ୍ୟ ନିଜ ନିଜ ଆହାରୀୟ ପଦାର୍ଥ ସୌର ତାପରୁ ପରିଚ୍ଛନ୍ନ ପୂର୍ବକ ପରିବର୍ଦ୍ଧିତ ଅତଏବ ଜଗଜ୍ଜୀବନ ରକ୍ଷା କରିବାରେ ପ୍ରବୃତ୍ତ ହୋଇ ସୂର୍ଯ୍ୟର ସବିତା ଆଖ୍ୟା ସାର୍ଥକ କଲେ ସୁତରାଂ ହରିତ ତାପର ଶିଙ୍କାରଣଦ୍ୱାରା ସକଳ ବସ୍ତୁର ଜଳୀୟାଂଶ ପୂରଣକରି ସେମାନଙ୍କୁ ପ୍ରକୃତିସ୍ଥ କଲେ ଏବଂ ଶୈତ୍ୟର ଉପଚାର ଅଧିବାସିମନରେ ଅପୂର୍ବାନନ୍ଦ ଜନ୍ମାଇଲେ, ସ୍ଥାନେ ସ୍ଥାନେ ବକଶ୍ରେଣୀ ମୀନ ପ୍ରତୀକ୍ଷାରେ ଜଳାଶୟ ନିକଟରେ ବସିଥିବାର ଦର୍ଶନ କରାଇ ଦୂରଦର୍ଶୀମାନଙ୍କ ମନରେ ଭଣ୍ଡ ଧାର୍ମିକର ଭାବ ଜନ୍ମାଇ ଅଛି, ଅମୃତ ପଟଳରେ ତରୁଣପାତ ପୂର୍ବକ ନାନାରଙ୍ଗର ସୃଜନ କରି ଆକାଶର ଶୋଭାସମ୍ପତ୍ତି ବିବର୍ଦ୍ଧନ କରୁଅଛି

ଅବଶେଷରେ ବିଧିର ବିଧାନାନୁସାରେ ଯାତାୟାତ କରି ସମୟକୁ ଦିନ ଓ ରାତ୍ର ଏହି ଦୁଇ ମହାଭାଗରେ ବିଭକ୍ତ କରୁଅଛି, ସୂର୍ଯ୍ୟ ଏହିପରି ଅଖିଳ ଜଗଦ୍ବାସୀଙ୍କର ମହୋପକାର ସାଧନ ପୂର୍ବକ ନାନା ପ୍ରକାର ଶୋଭା ସମ୍ପାଦନ କରି ଓ ଅନନ୍ତ ସମୟର ପରିଚ୍ଛେଦ ସୂଚନା ନିମିତ୍ତ ଦିନରାତ୍ରିର ସୃଷ୍ଟି କରି ଗମନାଗମନ କରୁଅଛନ୍ତି । ଶିଶୁ ସନ୍ତାନ ଚନ୍ଦ୍ର ସୂର୍ଯ୍ୟ ଓ ନକ୍ଷତ୍ର ପ୍ରଭୃତି ଗ୍ରହ ଉପଗ୍ରହମାନଙ୍କର ଉପରୋକ୍ତ ପ୍ରକାର କାର୍ଯ୍ୟ କଳାପ ସନ୍ଦର୍ଶନ ପୂର୍ବକ ମହାମହିମ ମହେଶ୍ୱରଙ୍କର ଆଶ୍ଚର୍ଯ୍ୟ ଲୀଳା ହୃଦୟଙ୍ଗମ କରି ଆଶ୍ଚର୍ଯ୍ୟାନ୍ୱିତ ହୁଏ ଏବଂ ପୁଷ୍ପର ବିକାଶ ତୁଲ୍ୟ ମଧୁର ମଧୁର ହାସ ପ୍ରକାଶ କରେ ।

ତତ୍ପରେ ସେ ବ୍ୟୋମପ୍ରତି ଦୃଷ୍ଟିପାତ କରି କହେ, "ହେ ବ୍ୟୋମ, ତୋହର ନାମ ଶୂନ୍ୟ, କିନ୍ତୁ ତୁ ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ ପ୍ରଭୃତି ସମସ୍ତ ଗ୍ରହ ଉପଗ୍ରହ ଓ ବାୟୁମଣ୍ଡଳର ଆଧାର, ତୋ ଦେହରେ ସେମାନେ ଅବଲୀଳା କ୍ରମେ କ୍ରୀଡ଼ା କରୁ ଅଛନ୍ତି, ସୁତରାଂ ମହତ୍ତ୍ୱ ବିଷୟରେ ପରମେଶ୍ୱରଙ୍କର ଦ୍ୱିତୀୟସ୍ଥାନ ଅଧିକାର କରିଅଛୁ, ସମସ୍ତଙ୍କର ସୃଷ୍ଟି ଆଗରୁ ତୋହର ସୃଷ୍ଟି ସୁତରାଂ ତୁହି ସମସ୍ତଙ୍କର ସାକ୍ଷୀ, ଭାବନାତୀତ ବିସ୍ତୀର୍ଣ୍ଣତା ହେତୁରୁ ତୋହର ଶରୀର ବିଷ୍ଣୁଙ୍କ ପ୍ରାୟ ନୀଳବର୍ଣ୍ଣ ପ୍ରତୀୟମାନ ହୁଏ, ତହିଁରେ ପୁଣି ନୀଳମେଘମାଳା ସମୟେ ସମୟେ ବିରାଜିତ ହୋଇ ତାହାକୁ ଗାଢ଼ତର କରୁଅଛନ୍ତି, ତହିଁରେ ପୁଣି

କେତେବେଳେ ସୌରକର ସଂଯୁକ୍ତ ହେବାରୁ ସପ୍ତବର୍ଣ୍ଣରଞ୍ଜିତ ଇନ୍ଦ୍ରଧନୁ ଶ୍ରୀକୃଷ୍ଣଙ୍କର ବନମାଳା ପ୍ରାୟ ଶୋଭାପାଉ ଅଛି, କେତେବେଳେ ବା ଚପଳା ଚମକ ତୋ ଦେହରେ ସମୁଜ୍ଜ୍ୱଳ ସ୍ୱର୍ଣ୍ଣମାଳା ପିନ୍ଧାଉ ଅଛି, କେତେବେଳେ ବା ଶୁଭ୍ରବଳାକା ଶ୍ରେଣୀ ଉଡ୍ଡୀନ ହୋଇ ବକ୍ଷଃପଦବାହୀନ କ୍ଷୁଦ୍ର କଳକାର ମାଳା ପିନ୍ଧାଉ ଅଛନ୍ତି, କେତେବେଳେ ହଂସକାରଣ୍ଡବ ପ୍ରଭୃତି ପକ୍ଷୀସକଳ ଉଡ୍ଡୀୟମାନ ହୋଇ ପ୍ରସ୍ଫୁଟିତ ଶିରୀଷଦ୍ୱାର କୁସୁମମାଳା ପରିଧାନ କରାଉ ଅଛନ୍ତି, ଏହିପରି ବିଭିନ୍ନ ବର୍ଣ୍ଣର ପକ୍ଷିମାନେ ଭିନ୍ନପ୍ରକାର ମାଳା ପରିଧାନ କରାଉ ଅଛନ୍ତି, କୌଣସି ସ୍ଥାନରୁ ଏକବସ୍ତୁ ଅପସାରିତ ହେଲେ ସେହି ଶୂନ୍ୟସ୍ଥାନ ତୋହର ଅଙ୍ଗୀଭୂତ ହେଉଅଛି କିମ୍ବା କୌଣସି ବସ୍ତୁରେ ଗୋଟିଏ ଛିଦ୍ର କରିଦେଲେ ସେହି ଛିଦ୍ରସ୍ଥାନ ତୋହଦ୍ୱାରା ଅଧିକୃତ ହେଉଅଛି, କୌଣସି ଅନାବୃତ ସ୍ଥାନରେ ଦଣ୍ଡାୟମାନ ହେଲେ ଚତୁର୍ଦ୍ଦିଗରେ ଯେଉଁ ରେଖାରେ ନଭୋମଣ୍ଡଳ ଓ ଭୂମଣ୍ଡଳ ମିଳିତ ହେଲାପରି ଦେଖାଯାଏ ତାହାକୁ ଚକ୍ରବାଳ କୁହାଯାଏ, ସେହି ଚକ୍ରବାଳହିଁ ତୋହର ମେଖଳା ଅଟେ; ଏହିପରି ତୋହସମ୍ବନ୍ଧରେ ସମସ୍ତ ବିଷୟ ଭାବିବା ମାନବ ଶକ୍ତିର ବହିର୍ଭୂତ ଅଟେ ।”

ପୁନଶ୍ଚ ଶିଶୁ ସନ୍ତାନ ଦର୍ଶନ କରେ ଯେ ଜଳବିନା ସଂସାର ଚଳି ପାରୁ ନାହିଁ; ନଦୀ ପର୍ବତ ଗୁହାରୁ କିମ୍ବା ହ୍ରଦରୁ ବହିର୍ଗତ ହୋଇ ଲୋକମାନଙ୍କର ଉପକାର ସାଧନ ନିମିତ୍ତ ଉଦ୍ୟୁ

ପାର୍ଶ୍ୱ ବୃକ୍ଷ ଓ ଶସ୍ୟମାନଙ୍କୁ ବର୍ଦ୍ଧନ କରାଇ ଅବିରତ ପ୍ରଧାବିତ ହେଉଅଛି, ଲୋକମାନେ ପ୍ରତ୍ୟହ ତହିଁରେ ସ୍ନାନ ଓ ତାହାର ଜଳ ପାନ କରି ସ୍ୱାସ୍ଥ୍ୟଲାଭ ପୂର୍ବକ ଜୀବନ ରକ୍ଷା କରୁ ଅଛନ୍ତି, ତୃଷାର୍ତ୍ତ ପକ୍ଷୀ ତାହାର ଦୁଗ୍ଧ-ଶ୍ୱେତ ଜଳ ପାନକରି ଜୀବନ ରକ୍ଷା କରୁଅଛି, ଉଭୟ କୂଳର ଲୋକମାନେ ବନ୍ୟା ସମୟରେ ତହିଁରେ ମତ୍ସ୍ୟ-ରଙ୍କ ପ୍ରାପ୍ତ ପତିତ ହୋଇ ନୀରସ ଓ ସରସ ଉର୍ବରର ସଂଗ୍ରହ ପୂର୍ବକ ନିଜର ଆବଶ୍ୟକୀୟ କାର୍ଯ୍ୟ ସମ୍ପାଦନ କରୁ ଅଛନ୍ତି, ଧୀବରମାନେ ତହିଁରୁ ମତ୍ସ୍ୟ ଧାରଣ କରି ନିଜର ଜୀବିକା ନିର୍ବାହ କରୁ ଅଛନ୍ତି, ନଦୀର ଜଳ ଉଦ୍ଭେଦୋପଯୋଗୀ ନାନାପ୍ରକାର ପଦରସ ସଂଯୁକ୍ତ ହୋଇ ଥିବାରୁ ସ୍ୱପାନୀୟ ହୋଇ ଲୋକମାନଙ୍କୁ ସ୍ୱାସ୍ଥ୍ୟ ପ୍ରଦାନ କରୁଅଛି, ଏବଂ ତତ୍‌ସ୍ପୃଷ୍ଟ ଶୀତଳ ସମୀରଣ ଘନ ଘନ ପ୍ରବାହିତ ହୋଇ କୂଳବାସିମାନଙ୍କର ଶ୍ରମ-ସ୍ୱେଦ ବହନ ପୂର୍ବକ ସେମାନଙ୍କର ଶ୍ରାନ୍ତି ଅପନୋଦନ କରୁଅଛି ଏବଂ ଯେଉଁ ଦେଶରେ ନଦୀସଂଖ୍ୟା ଅଧିକ ସେ ଦେଶ ଶସ୍ୟଶ୍ୟାମଳ ଅଟେ, ନଦୀ ନାବ୍ୟ ହୋଇଥିଲେ ବାଣିଜ୍ୟର ବିଶେଷ ସୁବିଧା ହୁଏ ଯଦ୍ୱାରା ଧନହୀନ ଲୋକେ ଅତୁଳ ସମ୍ପତ୍ତିର ଅଧିକାରୀ ହେଉ ଅଛନ୍ତି,—ଯେଉଁ ବ୍ୟକ୍ତି ବୃକ୍ଷ ତଳରେ ଅବସ୍ଥାନ କରୁଥିଲା ସେ ଦ୍ୱିତଳ ଅଥବା ତ୍ରିତଳ ବାସ କରୁଅଛି, ଯାହାର ଏକଖଣ୍ଡ ମାତ୍ର ଭୂମି ନ ଥିଲା ସେ ବିସ୍ତୃତ ଭୂଖଣ୍ଡର ଅଧିକାରୀ ହୋଇ ବସିଅଛି, ଯେଉଁ ବ୍ୟକ୍ତି ଭିକ୍ଷାପାତ୍ର ହସ୍ତରେ ଧରି ବୁଲୁଥିଲା ସେହି ବ୍ୟକ୍ତି କିମ୍ବା ତାହାର ସନ୍ତାନ ସନ୍ତତିମାନେ ଉଚ୍ଚ

ଶତ ଶତ ଲୋକଙ୍କୁ ଧନଦାନ କରୁ ଅଛନ୍ତି ଏତଦ୍‌ଭିନ୍ନ ପଶୁପକ୍ଷୀ ଓ ସରୀସୃପ ସମସ୍ତେ ଜଳପାନ କରି ନିଜ ନିଜ ପ୍ରାଣ ରକ୍ଷା କରୁଅଛନ୍ତି, ପୃଥିବୀର ପ୍ରାୟ ତ୍ରିଚତୁର୍ଥାଂଶ ସ୍ଥାନ ଜଳରାଶି ଦ୍ୱାରା ଆବୃତ, ନଦୀଦ୍ୱାରା ଯେଉଁ କାର୍ଯ୍ୟ ସାଧିତ ହୁଏ ପୁଷ୍କରିଣୀ ଓ କୂପଦ୍ୱାରା ତାହାର ଅଂଶିକେ କାର୍ଯ୍ୟମାତ୍ର ସମାହିତ ହେଉଅଛି, ଏତଦ୍‌ଭିନ୍ନ ଜଳାଶୟମାନ ମତ୍ସ୍ୟ କଚ୍ଛପ ଓ ଭେକ ପ୍ରଭୃତି ନାନାପ୍ରକାର ଜନ୍ତୁର ଆବାସସ୍ଥାନ ହୋଇ ଜଗତର ମହୋପକାର ସାଧନ ପୂର୍ବକ ନାନାପ୍ରକାର ଶୋଭା ସମ୍ପାଦନ କରୁ ଅଛନ୍ତି ଏବଂ ସ୍ଥାନେ୨ ନଦୀ ପୁଷ୍କରିଣୀ ଓ ହ୍ରଦମାନ କମଳ କୁମୁଦ କହ୍ଲାର ପ୍ରଭୃତି ବହୁବିଧ ଜଳଜପୁଷ୍ପଦ୍ୱାରା ଶୋଭିତ ହୋଇ ଅପୂର୍ବ ଶୋଭା ଧାରଣ କରୁ ଅଛନ୍ତି, ପୁନଶ୍ଚ ବର୍ଷାର ଅନବରତ ବାରିବର୍ଷଣଦ୍ୱାରା ଭୂମଣ୍ଡଳରେ ଯେଉଁ ସମସ୍ତ ଜଳପତିତ ହୁଏ ତାହା ଗୃହଆଡ଼ୁ ଗଡ଼ି ଯଦି ( ହିନ୍ଦୁ ମୁସଲ୍‌ମାନ ଓ ଖ୍ରୀଷ୍ଟିୟାନ ପ୍ରଭୃତି ଭିନ୍ନ ସମ୍ପ୍ରଦାୟର ଭକ୍ତି ଶ୍ରୀପରମେଶ୍ୱରଙ୍କଠାରେ ଅର୍ପିତ ହେଲା ପ୍ରାୟ ) ନଦୀଦ୍ୱାରା ପ୍ରବଳ ବେଗରେ ସାଗରାଭିମୁଖରେ ପ୍ରଧାବିତ ହେଉଅଛି ଏବଂ ସାଗର ଅକୁଣ୍ଠିତ ଭାବରେ ସେମାନଙ୍କୁ ସ୍ୱଗର୍ଭରେ ସ୍ଥାନ ପ୍ରଦାନ କରି ପୃଥିବୀକୁ ଜଳ ପ୍ଳାବନରୁ ରକ୍ଷା କରୁ ଅଛି, ସାଗର ଦୂର ଦେଶକୁ ଯାତାୟାତ କରିବା ପକ୍ଷରେ ସୁନ୍ଦର ପଥ ପ୍ରଦାନ କରି ଜଗତର ମହୋପକାର ସାଧନ କରୁଅଛି, ଏତଦ୍‌ଭିନ୍ନ ତହିଁରୁ ଲୋକମାନେ ମୁକ୍ତାପ୍ରବାଳାଦି ବହୁମୂଲ୍ୟ ପଦାର୍ଥ ଲାଭକରି ମନୋହର ଅଳଂକାର ନିର୍ମାଣ ପୂର୍ବକ ସୌନ୍ଦର୍ଯ୍ୟବୃଦ୍ଧି କରୁଅଛନ୍ତି

ଏବ ତାହାର ବାନମସ୍ୟଦ୍ୱାରା ନିଜର ଜୀବିକା ମଧ୍ୟ ନିର୍ବାହ କରୁଅଛନ୍ତି । ଜଳରାଶିର ଏହିପରି ଉପକାରିତା ଅନୁଭବଦ୍ୱାରା ବିଧିବିଧାନ ଉପରେ ଅଶ୍ୱର୍ଯ୍ୟଂଜନଙ୍କ ଭାନ୍ତି ବୁଝି ପାରେ କେଉଁ ବ୍ୟକ୍ତି କହିବ ଯେ ଏହାର କର୍ତ୍ତା କେହି ନାହିଁ, ଏହା ଆପେ ଆପେ ହୋଇ ଅଛି ଓ ହେଉଅଛି ।

ଶିଶୁ ସନ୍ତାନ ଏହିପରି ଭାବି ପୁନଶ୍ଚ ବାୟୁମଣ୍ଡଳ ଆଡକୁ ଦୃଷ୍ଟି ଫେରାଇଲା, ଦେଖିଲା ଏହା ଗୋଟିଏ ଅତି ଅଦ୍ଭୁତ ସୃଷ୍ଟି, ଏହାକୁ ପ୍ରାଣ ବୋଇଲେ ଅତ୍ୟୁକ୍ତି ହେବ ନାହିଁ, ପୃଥିବୀ ମଧ୍ୟରେ ଏହା ପ୍ରଥମ ଅହାର ଅଟେ; ଲୋକେ ଦୁଗ୍ଧପାନ ନ କରି ଘଣେ ରହିପାରିବେ, ଅନ୍ନଗ୍ରହଣ ନ କରି ଦଣ୍ଡେ ରହିପାରିବେ, ଜଳ ଗ୍ରହଣ ନକରି ମୁହୂର୍ତ୍ତେ ରହିପାରିବେ କିନ୍ତୁ ବାୟୁସେବନ ନ କରି କେହି ଘଣେ ମାତ୍ର ରହିପାରିବେ ନାହିଁ, ସୁତରାଂ ବାୟୁକୁ ପ୍ରାଣ ଆଖ୍ୟା ଦେଲେ କେହି ଅତ୍ୟୁକ୍ତି ବୋଲି କହି ପାରିବେ ନାହିଁ ଏହି ହେତୁରୁ ନିଖିଳ ଜନ ମଙ୍ଗଳ କାମନାଶୀଳ ବ୍ରହ୍ମଦର୍ଶୀ ସୁପଣ୍ଡିତ ଋଷିମାନେ ଜୀବନକୁ ବାୟୁର ଅଂଶ ବୋଲି ନିର୍ଦ୍ଦେଶ କରି ପ୍ରାଣ ଅପାନ ସମାନ ଉଦାନ ଓ ବ୍ୟାନ ଏହି ପଞ୍ଚ ଭାଗରେ ବିଭକ୍ତ କରିଅଛନ୍ତି, ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ଜୀବନ ଓ ବାୟୁର ସମ୍ବନ୍ଧ ଅତ୍ୟନ୍ତ ଘନିଷ୍ଠ ଅଟେ, ବାୟୁ ଲୋକମାନଙ୍କ ଶରୀରରୁ ପରିଶ୍ରମ ଜନିତ ସ୍ୱେଦ ବିନ୍ଦୁ ଅପହରଣ କରି ଶୀତଳତା ପ୍ରଦାନ ପୂର୍ବକ ସେମାନଙ୍କୁ ଆରାମ ପ୍ରଦାନ କରୁଅଛି

ଏବଂ ଅବିରତ ପ୍ରବାହିତ ହୋଇ ଅନେକ ସ୍ଥଳର ପ୍ରାଣନାଶକ ଦୁର୍ଗନ୍ଧ ବିଦୂରିତ କରୁଅଛି ଏବଂ କୁସୁମ ଶୋଭିତ ଉଦ୍ୟାନ ଓ ପୁଷ୍କରିଣୀ ପ୍ରଭୃତି ବହୁ ସ୍ଥାନରୁ ସୁଗନ୍ଧ ବହି ଆଣି ଓ ତାହା ପ୍ରାଣିମାନଙ୍କ ମଧ୍ୟରେ ବିତରଣ କରି ଆପଣାର ଗନ୍ଧବହ ନାମ ସାର୍ଥକ କରୁଅଛି, କାହିଁ ଅବା ପ୍ରବାହର ପ୍ରବଳ ବେଗଦ୍ୱାରା ଶତ ଶତ ପାଦପଶ୍ରେଣି ଓ ସମୃଦ୍ଧିଶାଳୀ ଲୋକମାନଙ୍କର ଆବାସ ସ୍ଥାନ ଇଷ୍ଟକ ନିର୍ମିତ ହର୍ମ୍ୟରାଜି ଭୂମିସାତ୍‌କରି ଅଦ୍ଭୁତ ବିକ୍ରମ ପ୍ରକାଶ କରୁଅଛି ଏବଂ ସମୟେ ସମୟେ ଆକାଶରେ ଦୋଦୁଲ୍ୟମାନ ମେଘମାଳାକୁ ଇତସ୍ତତଃ ଚାଳନକରି ନାନାପ୍ରକାର ବର୍ଣ୍ଣର ସଂଯୋଗ କରାଉଅଛି ଏବଂ ଜଳରୁ ଓ ନାନାପ୍ରକାର ରସରୁ ଉତ୍ଥିତ ଜଳମୟୀ ବାଷ୍ପକୁ ସ୍ୱ ଶରୀରରେ ସ୍ଥାନ ପ୍ରଦାନ କରି ନିଖିଳ ଲୋକମଙ୍ଗଳାର୍ଥ ତାହା ଯଥା କାଳରେ ବାରିରୂପେ ଭୂମଣ୍ଡଳକୁ ପ୍ରେରଣ କରୁଅଛି, କାହିଁ ଅବା ସୁସ୍ଥିର ଜଳରାଶିରେ କଲ୍ଲୋଳ ଜନ୍ମାଇ ବାଲାର୍କ କିରଣ ସଂଯୋଗରୁ ତହିଁରେ କ୍ରୀଡ଼ାଶୀଳ ଶତ ନାଗଫେଣାର ଭ୍ରମ ଜନ୍ମାଉଅଛି, କାହିଁ ଅବା ସାୟଂ କାଳରେ ତଦ୍‌ବତ୍ ଭ୍ରମୋତ୍ପାଦନ କରୁଅଛି କାହିଁ ଅବା ନବ କିଶଳୟମାନଙ୍କୁ ଧୀରେ ଧୀରେ ସଞ୍ଚାଳିତ କରି କୋମଳ-କରବେଣିଦ୍ୱାରା ଆହ୍ୱାନ କଲାପରି ସୌରକରତାପିତ ପଥଶ୍ରାନ୍ତ ପଥିକମାନଙ୍କୁ ଆହ୍ୱାନ କରିବାକୁ ବୃକ୍ଷମାନଙ୍କୁ ପ୍ରଣୋଦିତ କରୁଅଛି, କାହିଁ ବୃକ୍ଷ ଓ ଲତାମାନଙ୍କୁ ଆନ୍ଦୋଳିତ କରି ପଥିକମାନଙ୍କର କ୍ଷୁତ୍‌ପିପାସା ନିବାରଣାର୍ଥ ସୁସ୍ୱାଦ ଓ ରସାଳ ଫଳମାନ ଏବଂ ଭକ୍ତିରସାପ୍ଲୁତ

ଭକ୍ତମାନଙ୍କର ଭଗବାନ ନିବେଦନାର୍ଥ କୁସୁମରାଶି ନିକ୍ଷେପ କରୁଅଛ, କାହିଁ ଅବା ପୂର୍ଣ୍ୟତୋୟା ନଦୀ ଗର୍ଭରେ କୁସୁମରାଶି ନିକ୍ଷେପ କରି ତହିଁରେ ପୁଷ୍ପାଞ୍ଜଳି ପ୍ରଦାନ କରୁଅଛ, କାହିଁ ଅବା ଗଭୀର କାନନରେ ପ୍ରବେଶ ପୂର୍ବକ କଣ କଣ ଶବ୍ଦଦ୍ୱାରା ଧ୍ୱନିତ କରି ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ପ୍ରାପ୍ତ ଏକକାଳୀନ ଶତ ବଂଶୀ-ଧ୍ୱନି ପ୍ରକାଶ କରୁଅଛ, କେତେବେଳେ ବା ଭୀଷଣ ବେଗରେ ପ୍ରବାହିତ ହୋଇ ନଦୀ ଓ ସାଗର ମଧ୍ୟରେ ନୌକା ଓ ବୃହତ୍ ଜଳଯାନ ଜଳନିମଗ୍ନ ହେଲ ଦେହରେ ବେଷ୍ଟାଇ ଲକ୍ଷ ଲକ୍ଷ ଜଳପାର୍ବିଙ୍କର ଉଚ୍ଛାଉଳାଷଙ୍କୁ ଜଳର ବୁଦ୍ ବୁଦ୍ ପ୍ରାପ୍ତ ବିଲୀନ କରି ଦେଉଅଛି, ପୁଣି କାହାକୁ ଛପ୍ରା ଅନୁସରଣ କଲାପରି ପୃଥିବୀର ଗତିକୁ ଅନବରତ ଅନୁସରଣ କରି ବାଣିଜ୍ୟର ମହୋପକାର-ସାଧନ ପୂର୍ବକ ପୃଥିବୀର ଉନ୍ନତି-ତରୁମୂଳରେ ଜଳସେଚନ କରୁଅଛି, ପୁଣି ସ୍ୱଶରୀରଦ୍ୱାରା ଦେହମାନଙ୍କୁ ବହି ଆଣି ପ୍ରାଣିମାନଙ୍କ ମଧ୍ୟରେ ବିତରଣ କରୁଅଛ, ଏହିହେତୁରୁ ଏକର ବାକ୍ୟ ଅନ୍ୟ ଶ୍ରବଣ କରୁଅଛି ଓ ସଂସାର-ଜଞ୍ଜାଳ-ବିରକ୍ତ ବ୍ୟକ୍ତିମାନେ ବାରମ୍ବାର ସୁସ୍ୱର ସଙ୍ଗୀତ ଶ୍ରବଣ କରି ଚିତ୍ତ ପରିବର୍ତ୍ତନ କରୁଅଛନ୍ତି, କାହିଁ ଅବା ବାୟୁରାଶି ଅନେକ ସ୍ଥଳର ଧୂଳି ଓ ପତ୍ର ପ୍ରଭୃତି ଆବର୍ଜନା ବହି ଆଣି ଏକସ୍ଥାନରେ ସ୍ତୂପାକାର ଧାରଣ କରୁଅଛ ଯାହାକୁ ତ ବାଳକମାନେ ଖଣ୍ଡିଆ ଭୂତ କହୁଥାନ୍ତି, କାହିଁ ଅବା ପୁଷ୍କରିଣୀର ଜଳ ଓ ଜଳଚର ପ୍ରାଣୀମାନଙ୍କୁ ଏକକାଳିନ ଉଠାଇ ନେଇ ଅନ୍ୟ ସ୍ଥାନରେ ତାହା ନିକ୍ଷେପ ପୂର୍ବକ ପୁଷ୍କରିଣୀ ଶୁଷ୍କକରି

ଦେଉଅଛି ଏବଂ କୌଣସି ସ୍ଥଳରେ ନଦୀ ଓ ସମୁଦ୍ର ମଧ୍ୟରୁ ମଧ୍ୟ ଜଳ ଉଠାଇନେଇ ଅନ୍ୟ ସ୍ଥଳରେ ନିକ୍ଷେପ କରୁଅଛି, ଏତତ୍ପର ବାୟୁ ମଣ୍ଡଳ ବିଧି ବିଧାନର ଆଶ୍ଚର୍ଯ୍ୟ ପ୍ରକାର ଲୀଳା ପ୍ରଦର୍ଶନ ପୂର୍ବକ ଅନ୍ୟର ଏକପ୍ରକାର ମହୋପକାର ସାଧନର କାରଣୀ-ଭୂତ ହୋଇଅଛି । ବାୟୁର ସ୍ପର୍ଶ ନହେଲେ ଅଗ୍ନି ଉଦ୍ଦୀପିତ କିମ୍ବା ପ୍ରଜ୍ୱଳିତ ହୁଏ ନାହିଁ ତେଣୁକରି ଅଗ୍ନିକୁ ବାୟୁସଖ ବୋଲି କୁହାଯାଏ ସୁତରାଂ ଅଗ୍ନି ବିଦ୍ୟମାନ ଥିଲେ ସୁଦ୍ଧା ବାୟୁ ଅଭାବରୁ ସଂସାର ମାୟା ବଦ୍ଧକାରୀ ସର୍ବାଙ୍ଗ ପରିପୋଷକ ଉଦରର ପୋଷଣାର୍ଥ ଖାଦ୍ୟ ଦ୍ରବ୍ୟ କିମ୍ବା ପାନୀୟ ପ୍ରଭୃତି କୌଣସି ପଦାର୍ଥ ସିଦ୍ଧ କରାଯାଇ ପାରନ୍ତା ନାହିଁ ଅତଏବ ଜୀବନ ରକ୍ଷା ଅସମ୍ଭବ ହୋଇ ପଡ଼ନ୍ତା ସୁତରାଂ ବାୟୁ ଯେ ସର୍ବତୋଭାବେ ପ୍ରାଣରକ୍ଷକ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ପୁନଶ୍ଚ ଅଗ୍ନିପ୍ରତି ଶିଶୁର ଦୃକ୍‌ପାତ ହେଲା ;— ପ୍ରକୋଷ୍ଠ ମଧ୍ୟରେ ସୌରକରସଙ୍କାଶ ରଜନୀ-ଧ୍ୱାନ୍ତ ଧ୍ୱଂସକାରକ * ବାଲାନନ୍ଦବର୍ଦ୍ଧକ ଆଲୋକ ପ୍ରଜ୍ୱାଳିତ କରି ସକଳ ପଦାର୍ଥ

* ବାଲାନନ୍ଦ ବର୍ଦ୍ଧକ—ଶିଶୁଗଣାନନ୍ଦଦାୟକ । ବର୍ଷକର କିମ୍ବା ଦୁଇ ବର୍ଷର ପିଲାମାନେ ଦୀପ ଜାଳିବାର ଦେଖିଲେ ଅତ୍ୟନ୍ତ ଆନନ୍ଦାନୁଭବ କରନ୍ତି ଏପରିକି ତାହାକୁ ଧରିବା-ପାଇଁ ସର୍ବଦା ଇଚ୍ଛା କରନ୍ତି ।

ପ୍ରତ୍ୟକ୍ଷ କରୁଅଛୁଁ, କର୍ମକାରଗଣ ଅଗ୍ନିରେ ଲୌହକୁ ଦ୍ରବକର ବ୍ୟବହାରୋପଯୋଗୀ ଶତ ଶତ ଅସ୍ତ୍ର ଶସ୍ତ୍ର ନିର୍ମାଣ ପୂର୍ବକ ସଂସାରର କାର୍ଯ୍ୟ ସହଜରେ ଚଲାଇବା ପାଇଁ ସାହାଯ୍ୟ କରୁ ଅଛନ୍ତି, ସ୍ୱର୍ଣ୍ଣକାରମାନେ ମଧ୍ୟ ସେହିପରି ସ୍ୱର୍ଣ୍ଣ ଓ ରୌପ୍ୟ ବିଗଳିତ କରି ସୌନ୍ଦର୍ଯ୍ୟ ସମ୍ପାଦକ ନାନାପ୍ରକାର ଅଳଙ୍କାର ପ୍ରସ୍ତୁତ କରୁ ଅଛନ୍ତି, ଆଜ ଯେଉଁ ଲୌହଶକଟ ଦ୍ୱାରା ଲକ୍ଷ ଲକ୍ଷ ଲୋକ ବହୁଦୂର ପଥକୁ ଅତ୍ୟଳ୍ପ ସମୟ ମଧ୍ୟରେ ଅନାୟାସରେ ଅତିକ୍ରମ କରି ସ୍ୱ ସ୍ୱ କାର୍ଯ୍ୟ ସାଧନ କରୁଅଛନ୍ତି ସେହି ଶତସିଂହନିର୍ଘୋଷକାରୀ ଭୂମିକମ୍ପୋତ୍ପାଦନ ପବନ ଗମନଜୟୀ ଶତହସ୍ତି ବଳୀ ଲୌହଶକଟ ଅଗ୍ନି ପ୍ରଭାବରେହିଁ ଚାଳିତ ହେଉଅଛି, ତଦ୍ରୂପ ଶତ ଜଙ୍ଗମ ସୌଧାକାରଧାରୀ ଭୀମବଳ ଜଳାନ୍ଦୋଳନକାରୀ ସାଗରବକ୍ଷରଙ୍ଗସଞ୍ଚାଳୀ ତିମିର ବର୍ଜ୍ଜନ ଜଳଜୀବ ଭୟପ୍ରଦ ପୋତ ସକଳ ଅଗ୍ନି ପ୍ରଭାବରେହିଁ ଭୂମଣ୍ଡଳର ଚତୁର୍ଦ୍ଦିଗରେ ଭ୍ରମଣ କରୁ ଅଛନ୍ତି, ଏତଦ୍ଭିନ୍ନ ଅନାୟାସକର୍ମା ବିବିଧଯନ୍ତ୍ର ସକଳ ଅଗ୍ନିଦ୍ୱାରା ସଞ୍ଚାଳିତ ହୋଇ ଜଗତର ବିଶେଷ ମଙ୍ଗଳ ସାଧନ କରୁଅଛନ୍ତି ଏବଂ ଅଗ୍ନି ଆଗ୍ନେୟ ବାଣଦ୍ୱାରା ( ଆତସବାଜିରେ ) କ୍ଷଣକ ସକାଶେ ମାନବ ମନରେ ଆମୋଦ ଜନ୍ମାଇ ଜନ୍ମ ଜୀବନର ଉତ୍କୃଷ୍ଟ ନିଦର୍ଶନ କରୁଅଛି, ଯେଉଁ ଗୁଣଦ୍ୱାରା ଅଗ୍ନି ଜୀବତ୍ୱ ପ୍ରାପ୍ତ ହୋଇ ଏତେ ମହତ କାର୍ଯ୍ୟ ସାଧନରେ ସମର୍ଥ ହୋଇ ଅଛି ତାହାର ସେହି ଗୁଣମାନ ଅର୍ଥାତ୍ ତାପଦ୍ୱୟ ଶସ୍ତରେ ଶରୀର ରହିତ ହୋଇଅଛି, ସେହି ଗୁଣଦ୍ୱାରା ସୂର୍ଯ୍ୟ ତାହାଙ୍କର

ସକଳ ପ୍ରକାର କାର୍ଯ୍ୟ ସାଧନ କରି ଜଗତରେ ସର୍ବତ୍ର ଆଶା ପ୍ରାପ୍ତ ହୋଇ ଅଛନ୍ତି ସେହି ରୂପ ସକଳ ଘଟେ ନାରାୟଣ ସୂକ୍ଷ୍ମ ସମସ୍ତ ବସ୍ତୁରେ ପ୍ରଚ୍ଛନ୍ନଭାବେ ବିଦ୍ୟମାନ । ସୁତରାଂ ବ୍ୟୋମ, ଅପ୍, ମରୁତ୍ ଓ ତେଜ ଏହି ଚତୁଃପ୍ରକାର ଭୌତିକ ପଦାର୍ଥ ଦ୍ୱାରା ଯେ କେତେଦୂର ଅଶ୍ଚର୍ଯ୍ୟଂଜନକ ବିଷୟମାନ ସାଧିତ ହେଉଅଛି ତାହା ସ୍ଥିର ଚିତ୍ତରେ ଭାବନ୍ତେ ଭଗବାନଙ୍କର ବିଚିତ୍ର ଲୀଳାରେ ଅଶ୍ଚର୍ଯ୍ୟାନ୍ୱିତ ହୋଇ ଶିଶୁ ମଧୁର ମଧୁର ହାସ ପ୍ରକାଶ କରେ ।

ତତ୍ପରେ ଶିଶୁ ଈଶ୍ୱର ବିଷୟ ଭାବନା କଲା :—ଈଶ୍ୱର ସମଷ୍ଟିରେ ପୃଥିବୀ ଘଟିତ, ସେ ଆମ୍ଭମାନଙ୍କୁ ଜନନୀ ତୁଲ୍ୟ କୋଳରେ ଧାରଣ କରୁଅଛି, ଆମ୍ଭେମାନେ ତହିଁରେ ନାନା-ପ୍ରକାର ଶସ୍ୟୋତ୍ପାଦନ କରି ତଦ୍ଦ୍ୱାରା ଦେହର ପରିପୋଷଣ କରୁଅଛୁଁ, ଆମ୍ଭେମାନେ ଯେଉଁ ଗାଭୀର ସୁମିଷ୍ଟ ଦୁଗ୍ଧ ପାନ-କରି ଶରୀର ରକ୍ଷା କରୁଅଛୁଁ ସେ ମଧ୍ୟ ତହିଁରୁ ଉତ୍ପନ୍ନ ଲତା ଗୁଳ୍ମ ଘାସାଦି ଭକ୍ଷଣ କରି ପରିପାଳିତ ଏବଂ ଅନ୍ୟାନ୍ୟ ସମସ୍ତ ପଶୁ ପକ୍ଷୀ ତହିଁରୁ ଉତ୍ପନ୍ନ ପଦାର୍ଥମାନ ଭକ୍ଷଣ କରି ନିଜର ଶରୀର ପୋଷଣ କରୁଅଛନ୍ତି, ଏବଂ ସମସ୍ତ ଜଳଚର ପ୍ରାଣୀ ମଧ୍ୟ ତହିଁରୁ ଆହାରୀୟ ପଦାର୍ଥ ଗ୍ରହଣ କରୁଅଛନ୍ତି, ଯେଉଁ ପାଦପମାନେ ଆମ୍ଭମାନଙ୍କୁ ସୁମିଷ୍ଟଫଳ ସୁବାସପୁଷ୍ପ ଏବଂ ଔଷଧମାନ ଦେଉ ଅଛନ୍ତି ସେମାନେ ମଧ୍ୟ ତହିଁରୁ ରସ ସଂଗ୍ରହ କରି ପରିବର୍ଦ୍ଧିତ, ଲୋକ-

ମାନେ ତଦ୍ଦ୍ୱାରା ନିଜର ବାସଗୃହ ନିର୍ମାଣ କରି ତହିଁରେ ସୁଖରେ ଆଶ୍ରୟ ଗ୍ରହଣ କରୁ ଅଛନ୍ତି ଏବଂ ଧନୀ ଲୋକମାନେ ଯେଉଁ ଇଷ୍ଟକ ନିର୍ମିତ ସୌଧମାଳାରେ ବାସ କରି ମହା ସୁଖରେ କାଳ ଯାପନ କରୁ ଅଛନ୍ତି, ତାହା ମଧ୍ୟ ସେହି ମୃତ୍ତିକାରେ ନିର୍ମିତ, ଆମ୍ଭେମାନେ ସ୍ୱର୍ଣ୍ଣ ରୌପ୍ୟ ଓ ଲୌହ ପ୍ରଭୃତି ଯେଉଁ ସମସ୍ତ ମହାମୂଲ୍ୟ ଓ କାର୍ଯ୍ୟକାରୀ ଧାତୁ ପଦାର୍ଥ ବ୍ୟବହାର କରୁଅଛୁଁ ସେ ସମସ୍ତ ସେହି ମୃତ୍ତିକା ଗର୍ଭରୁ ପ୍ରାପ୍ତ ହୁଏ, ହୀରକ ପ୍ରବାଳ ପ୍ରଭୃତି ମଣି ମୁକ୍ତାଦି ମହାମୂଲ୍ୟ ବସ୍ତୁ ସେହି ଭୂଗର୍ଭରୁ ଉତ୍ଥିତ, ଆମ୍ଭେମାନେ ଯେଉଁ ପଥର କୋଇଲା ଓ କେରୋସିନ ତେଲ ବ୍ୟବହାର କରି ନାନାପ୍ରକାର କାର୍ଯ୍ୟ ସାଧନ କରୁଅଛୁଁ ତାହା ମଧ୍ୟ ସେହି ଭୂଗର୍ଭରେ ନିହିତ ଅଛି, ଆମ୍ଭେମାନେ ଯେଉଁ ବସ୍ତ୍ର ପରିଧାନ କରି ଶୀତାତପ ନିବାରଣ ପୂର୍ବକ ସଭ୍ୟ ଜଗତରେ ଗଣ୍ୟ ହେଉଅଛୁଁ ତାହାର ଉପକରଣ କାର୍ପାସ ପ୍ରଭୃତି ସେହି ମୃତ୍ତିକାରୁ ଜନ୍ମୁଅଛି, ଆମ୍ଭେମାନେ ଯେଉଁ ପାନୀୟ ବ୍ୟବହାର କରି ତୃଷା ନିବାରଣ କରୁଅଛୁଁ ତାହା ମଧ୍ୟ ସେହି ଭୂଗର୍ଭରୁ ଉତ୍ଥିତ ହେଉଅଛି ସୁତରାଂ ଆମ୍ଭମାନଙ୍କର ଗ୍ରାସାଚ୍ଛାଦନ ଓ ବ୍ୟବହାର୍ଯ୍ୟ ସମସ୍ତ ପଦାର୍ଥର ଉପକରଣ ମୃତ୍ତିକାରୁହିଁ ଜାତ ହେଉଅଛି; ଏତଦ୍ଭିନ୍ନ ଚମ୍ପା ମଲ୍ଲୀ ମାଲତୀ ପଦ୍ମ କୁମୁଦ ଓ କହ୍ଲାର ପ୍ରଭୃତି ଶୋଭାପ୍ରଦ ପୁଷ୍ପମାନ ମୃତ୍ତିକାରୁହିଁ ଜାତ। ଯେଉଁ ସ୍ରୋତ ନଦୀ ହ୍ରଦ ଓ ସମୁଦ୍ର ଆମ୍ଭମାନଙ୍କୁ ବହୁ ପ୍ରକାର ବ୍ୟବହାର୍ଯ୍ୟ ଦ୍ରବ୍ୟ ଦେଇ ବିଶେଷ ଉପକାର ସାଧନ କରୁ

ଥିଛନ୍ତି ସେମାନେ ସେହି ମୃତ୍ତିକାକୁ ଆଶ୍ରୟ କରି ରହି ଅଛନ୍ତି; ପରେ ମଳମୂତ୍ର ଓ ଶୁଷ୍କପତ୍ର ପ୍ରଭୃତି ଯେଉଁ ସମସ୍ତ ଆବର୍ଜ୍ଜନା ତହିଁରେ ପଡ଼ୁଅଛି ତାହାକୁ ସେ ନିଜର ଅଙ୍ଗୀଭୂତ କରି ସ୍ୱ ଶରୀରରେ ଆଶ୍ରୟ ଦେଉଅଛି ଏବଂ ଉଦ୍ଭିଜ୍ଜାତ ତରୁ ଲତା ଗୁଳ୍ମମାନଙ୍କୁ ମଧ୍ୟ ସେହିପରି ନିଜ କୋଳରେ ଆଶ୍ରୟ ଦେଉ ଅଛି । ଅବଶେଷରେ ମନୁଷ୍ୟ ପଶୁପକ୍ଷୀ ଓ ସରୀସୃପ ସମସ୍ତ ପ୍ରାଣିମାନେ ଯେତେବେଳେ ପ୍ରାଣ ତ୍ୟାଗ କରୁଅଛନ୍ତି ସେତେବେଳେ ସମସ୍ତଙ୍କୁ ଅକୁଣ୍ଠିତ ଭାବରେ କୋଳାଗ୍ରତ କରୁଅଛି ; ସଂକ୍ଷେପରେ କହିବାକୁ ଗଲେ ଜଗତର ସମସ୍ତ ପ୍ରାଣୀ ଭୂମିରୁ ଉଦ୍ଭୂତ ଓ ତଦ୍ଦ୍ୱାରା ପରିପାଳିତ ହୋଇ ଅବଶେଷରେ ତହିଁରେ ଲୀନ ହେଉ ଅଛନ୍ତି । ଏହି ବିଷୟର ଭାବନାହିଁ ଶିଶୁର ଆଶ୍ଚର୍ଯ୍ୟାନ୍ୱିତ ହେବାର କାରଣ ଅଟେ ।

ଏହିପରି ଶିଶୁସନ୍ତାନ ପଞ୍ଚଭୂତର ବିଷୟମାନ ଭାବି ଶ୍ରୀପରମେଶ୍ୱରଙ୍କ ମହିମା ସ୍ମରଣ ପୂର୍ବକ ଚମତ୍କୃତ ହୁଏ ଯାହାର ମଧ୍ୟ ଚିନ୍ତାକରେ ଯେ ଏହି ଭୂମଣ୍ଡଳ ଯେପରି ପଞ୍ଚଭୂତର ଅନ୍ତର୍ଗତ ସେହିପରି ଏହି ଶରୀର ମଧ୍ୟ ପଞ୍ଚଭୂତର ଅନ୍ତର୍ଗତ, ତହିଁରେ ପଞ୍ଚଭୂତ ଭିନ୍ନ ଅନ୍ୟ କେହି କାର୍ଯ୍ୟ କରୁନାହାନ୍ତି, ତେଣୁକରି ଯେତେବେଳେ ଏହି ଶରୀରର ପାତହୁଏ ତାହା ପଞ୍ଚଭୂତ ସଙ୍ଗେ ଲୀନ ହୋଇଥାଏ । ଶିଶୁ ଏହିପରି ପଞ୍ଚଭୂତର ବିଷୟ ପ୍ରତ୍ୟକ୍ଷ ଓ ସେମାନଙ୍କର ଶ୍ରବଣ ସଂଗ୍ରାମ ସ୍ମରଣକରି ସଂସାରର ଅନିତ୍ୟତା ହୃଦୟଙ୍ଗମପୂର୍ବକ ଲୋକମାନଙ୍କର

ନଶ୍ୱରତା ଭାବ ଦର୍ଶନରେ ଧୀରଭାବରେ ଅଧ୍ୟବସାୟ ବିସ୍ତାରିତ
କରେ .— ଏହି ବିଶ୍ୱମଣ୍ଡଳରେ ଅଧିକାଂଶଲୋକ ପ୍ରତ୍ୟହ
ଅଟ୍ଟେୟବାଣ ତୁଲ୍ୟ ନିଜ ନିଜ କାର୍ଯ୍ୟସମାପନ ପୂର୍ବକ
ଆପଣାର ସ୍ନେହାସ୍ପଦ ପୁତ୍ର, କଳତ୍ର, ଭ୍ରାତାବନ୍ଧୁ ଓ ଭକ୍ତି
ଭାଜନ ମାତାପିତା ପ୍ରଭୃତି ସମସ୍ତ ଆତ୍ମୀୟବର୍ଗ ଓ ବହୁଶ୍ରମୋ-
ପାର୍ଜିତ ସ୍ନେହସଞ୍ଚିତ ସକଳଧନଦ୍ରବ୍ୟ ପରିତ୍ୟାଗକରି ଇହଧାମ
ଛାଡ଼ି ଯାଉଥିବା ଦେଖି ମଧ୍ୟ ଆପଣାକୁ ଚିରଜୀବୀ ବୋଲି
ମନେକରି କାମ କ୍ରୋଧ ଲୋଭ ମୋହପ୍ରଭୃତି ଷଡ଼ରିପୁର
ବଶବର୍ତ୍ତୀ ହୋଇ ନିତ୍ୟ ପ୍ରତିହିଂସାସାଧନ ପରଦ୍ରବ୍ୟାପହରଣ
ପରବ୍ୟକ୍ତିପ୍ରତି ଅନ୍ୟାୟାକ୍ରମଣ ଆତ୍ମଗର୍ବ ପରଗୁଣଲଙ୍ଘନ ପ୍ରଭୃତି
ପାଶବବୃତ୍ତିରେ ପ୍ରବୃତ୍ତ ହେଉଅଛନ୍ତି, ଦିନେ ହେଁ ଭାବନା-
ହାନ୍ତି ଯେ ଆମ୍ଭେମାନେ କାଳପାଶାବଦ୍ଧ ହୋଇ ପ୍ରତିମୁହୂର୍ତ୍ତରେ
ମୃତ୍ୟୁର ନିକଟକୁ ଅଗ୍ରସର ହେଉଅଛୁ, ଆମ୍ଭେମାନେ ସମସ୍ତେ
ମରଣଶୀଳ, ତହିଁରେ ପୁଣି ମରଣ ସମୟର ସ୍ଥିରତା ନାହିଁ
ଅର୍ଥାତ୍ ଆଜି ମରିବା କି କାଲି ମରିବା ଏହା ଅନିଶ୍ଚିତ
ଏହା ନ ଭାବି ପରସ୍ପର ହନନରେ ପ୍ରବୃତ୍ତ ହେଉଅଛନ୍ତି, ରାଜା
ଓ ଜମିଦାର ନିଜ ନିଜ ପ୍ରଜାମାନଙ୍କର ବହୁକଷ୍ଟାର୍ଜିତ
ସର୍ବସ୍ୱ ନିଜସ୍ୱ ମନେକରି ଅପହରଣ କରୁଅଛନ୍ତି ଏବଂ
ସେମାନଙ୍କ କାତର କଣ୍ଠ ମନେକରି ଅକୁଣ୍ଠିତଭାବେ ସେମାନଙ୍କ
ପ୍ରତି ଅନ୍ୟାୟାଚରଣ କରୁଅଛନ୍ତି, ଏବଂ ବିନାମୂଲ୍ୟଦାନରେ
ସେମାନଙ୍କଦ୍ୱାରା ନିଜର ଅବଶ୍ୟକୀୟକାର୍ଯ୍ୟ କରାଇ ନେଉ
ଅଛନ୍ତି ପୁନଶ୍ଚ ପରସ୍ପର ମଧ୍ୟରେ ଦ୍ୱନ୍ଦ ଲଗାଇ ଦେଇ ପ୍ରବୃତ

ଦୋଷୀଠାରୁ ଉଚିତ ଉତ୍କୋଚ ଗ୍ରହଣ ପୂର୍ବକ ବାନ୍ଧବଙ୍କରୂପେ
ନିର୍ଦ୍ଦୋଷଙ୍କୁ ଦଣ୍ଡ ଦେଉଅଛନ୍ତି, କୌଣସି ପ୍ରଜା ନିଃସନ୍ତାନ
ହୋଇ ମରିଗଲେ ତାହାର ସ୍ଥାବରାସ୍ଥାବର ସମ୍ପତ୍ତି ତାହାର
ସ୍ତ୍ରୀ ଓ ଭ୍ରାତୃବର୍ଗଙ୍କୁ ଭୋଗକରିବାକୁ ନ ଦେଇ ହସ୍ତଗତ କରୁ
ଅଛନ୍ତି ଦେବଦ୍ବିଜଙ୍କ ଉପନୟନ ଓ ବିବାହ ପ୍ରଭୃତି କୌଣସି
ପର୍ବ ଉପସ୍ଥିତ ହେଲେ ତଦୁପଲକ୍ଷେ ମାଗଣଙ୍କର ଅକୁଣ୍ଠିତ
ଭାବରେ ଦରିଦ୍ର ପ୍ରଜାମାନଙ୍କଠାରୁ ଅର୍ଥ ସଂଗ୍ରହ କରୁଅଛନ୍ତି,
ମାଗଣ ଦେବାରେ କେହି ଅସ୍ବୀକୃତ ହେଲେ ତାହାପ୍ରତି
କ୍ରୋଧଦୃଷ୍ଟି ନିକ୍ଷେପକରି ତାହାର ସର୍ବନାଶ କରିବା ଓ ତାହାକୁ
ବିଶେଷ ଅପମାନିତ କରିବାରେ ପ୍ରବୃତ୍ତ ହେଉଅଛନ୍ତି,
ବିଜେତା ବିଜିତପ୍ରତି ନାନା ଅନ୍ୟାୟାଚରଣକରି ତାହାର
ସର୍ବସ୍ବ ଲୁଣ୍ଠନ କରୁଅଛି, ଉତ୍ତମର୍ଣ୍ଣ ଅଧମର୍ଣ୍ଣଠାରେ ଅତ୍ୟନ୍ତ
ଅନ୍ୟାୟଭାବରେ ଋଣବୃଦ୍ଧି କରିବାରେ ପ୍ରବୃତ୍ତ ହେଉଅଛି,
ଉପରସ୍ଥକର୍ମଚାରୀମାନେ ନିମ୍ନ କର୍ମଚାରୀମାନଙ୍କର କୌଣସି
ସୁଖ ସ୍ବାଚ୍ଛନ୍ଦ୍ୟପ୍ରତି ଦୃଷ୍ଟି ନ ରଖି ସେମାନଙ୍କୁ ଅନେକକାଳ
କ୍ରୀତଦାସ ତୁଲ୍ୟ ଅବିରତ ପରିଶ୍ରମ କରିବାକୁ ବାଧ କରୁଅ-
ଛନ୍ତି; କାହିଁ ଅବା କେହି ନିଜର କାର୍ଯ୍ୟ ସାଧନ କିମ୍ବା ଆମୋଦ
ଅଥବା ଅନ୍ୟଠାରୁ ପ୍ରଶଂସା ପାଇବା ଉଦ୍ଦେଶ୍ୟରେ ଶତ ଶତ
ଲୋକମାନଙ୍କୁ ଭୋଜିଦେବା ନିମିତ୍ତ ଛାଗପ୍ରଭୃତି ନିରୀହପ୍ରାଣି-
ମାନଙ୍କର ଜୀବନଲୀଳା ସାଙ୍ଗକରୁଅଛି, କାହିଁ ଅବା କେହି
ନିଜର ଲକ୍ଷ୍ୟଭେଦନପୁଣତା ଦର୍ଶାଇବା ଉଦ୍ଦେଶ୍ୟରେ କେହି
ଅବା ଆମୋଦରେ କେହି ବା ଆମିଷଭକ୍ଷଣ-ଲାଳସା ମେଣ୍ଟା-

ଇବା ଅଂଶରେ ଶତ ଶତ ଜୀବହତ୍ୟା କରୁଅଛନ୍ତି, କେହି ଅବା କୌତୁକ ଦର୍ଶନୋଦ୍ଦେଶ୍ୟରେ କୁକ୍କୁର ସଙ୍ଗେ କୁକ୍କୁରର, ମେଷସଙ୍ଗେ ମେଷର, କୁକ୍କୁଟସଙ୍ଗେ କୁକ୍କୁଟର କିମ୍ବା ମେଷ-ସଙ୍ଗେ କୁକ୍କୁରର ସଂଗ୍ରାମ ଲଗାଇ ଦେଉଅଛନ୍ତି, କେହି ଅବା ଅଶ୍ୱଗୋମହିଷାଦି ପଶୁମାନଙ୍କୁ ଉପଯୁକ୍ତ ଆହାର ନ ଦେଇ ସେମାନଙ୍କୁ ଅତିରିକ୍ତ ପରିଶ୍ରମ କରାଉଅଛନ୍ତି, ନ୍ୟାୟକ୍ଷେତ୍ର ବିଚାରାଳୟରେ ଉକିଲ ଓ ମୁକ୍ତିଆରମାନେ ପକ୍ଷମାନଙ୍କଠାରୁ ଅଯଥା ଅର୍ଥଗ୍ରହଣ କରିବାକୁ ଅକୁଣ୍ଠିତଭାବରେ ହସ୍ତପ୍ରସାରଣ କରୁଅଛନ୍ତି, କେହି ବା ସ୍ୱାଭିଳାଷ ସାଧନୋଦ୍ଦେଶ୍ୟରେ ଅପରକୁ ବିପଦ୍ଗ୍ରସ୍ତକରି ତାହାର ଭବଲୀଳା ସାଙ୍ଗକରୁ-ଅଛନ୍ତି, କେହି ଅବା ପ୍ରତିହିଂସା ସାଧନ ନିମିତ୍ତ ଅପରର ଘରେ ଅଗ୍ନି ପ୍ରଦାନକରି ତାହାର ସର୍ବସ୍ୱ ଧ୍ୱଂସ କରୁଅଛନ୍ତି, କେହି ବା ନିଜର ସମ୍ପତ୍ତି ବଢ଼ାଇବା ଉଦ୍ଦେଶ୍ୟରେ ଅପରର ବହୁଦୁଃଖା-ର୍ଜ୍ଜିତ ଧନ ବହୁଆଣି ଆତ୍ମସାତ୍ କରୁଅଛନ୍ତି, କାହିଁ ଅବା କେହି ନିଜର କାମନାସିଦ୍ଧି ନିମିତ୍ତ ପରସ୍ପର ବହୁକାଳ ସ୍ନେହପୋଷିତ ବନ୍ଧୁତାକୁ ଦଂଶନକରି ଦୁଇବନ୍ଧୁ ମଧ୍ୟରେ ବିଦ୍ରୋହ ଜନ୍ମାଇ ଦେଉଅଛନ୍ତି, କେଉଁଠାରେ ପ୍ରଜା ଦୁର୍ବ୍ୟାଚରଣ ଦ୍ୱେଷକ ହିଂସକ ରାଜାର ଶାସନ ଲଙ୍ଘନକରି ଥିବାରୁ ରାଜଭକ୍ତି ମୂଳରେ ଜଳାଞ୍ଜଳି ଦେଇ ଅଶିଷ୍ଟତା ପ୍ରକାଶ କରୁଅଛନ୍ତି, କେଉଁଠାରେ ବା ଅଧମର୍ଣ୍ଣ ଋଣକରିଥିବା ଅର୍ଥ ଅସ୍ୱୀକାର ପୂର୍ବକ ଅନ୍ୟାୟ ଓ ଅକୃତଜ୍ଞତା ପ୍ରଦର୍ଶନକରି ଓ ଦୁର୍ବଳ ଲୋକମାନଙ୍କ ପ୍ରତି ଉତ୍ତମର୍ଣ୍ଣର ଅତ୍ୟାକର୍ଷଣ କରି ଘୋର

ପାପର ପରିଚୟ ଦେଉଅଛନ୍ତି, କେଉଁଠାରେ ଭୃତ୍ୟ ପ୍ରଭୁର ନିର୍ଦ୍ଦିଷ୍ଟ କାର୍ଯ୍ୟନ କରି ତାହାଙ୍କୁ ପ୍ରତାରିତ କରୁଅଛନ୍ତି, କେଉଁଠାରେ ବା ନିମ୍ନକର୍ମଚାରୀ ଉପରିସ୍ଥ କର୍ମଚାରିଙ୍କର ଆଦେଶ ଲଙ୍ଘନ କରି ଅବିନୟର ଆଦର୍ଶ ଦେଖାଉଅଛନ୍ତି, କାହିଁ ବା ସନ୍ତାନ ମାତପିତା ପ୍ରଭୃତି ଗୁରୁଜନଙ୍କର ଆଜ୍ଞା ଲଙ୍ଘନକରି ସାକ୍ଷାତ୍ ପରମେଶ୍ୱର-ଙ୍କର ଅବମାନନା କରୁଅଛନ୍ତି, କାହିଁ ବା ସ୍ୱାମୀ ଓ ସ୍ତ୍ରୀ ପରସ୍ପର ପ୍ରତି ଯୋଗ୍ୟ ସ୍ନେହ ପ୍ରଦର୍ଶନ କରୁନାହାନ୍ତି, କେହି ବା ଧନ ବଳରେ ଗର୍ବିତ ହୋଇ ସମସ୍ତଙ୍କୁ ତୁଚ୍ଛଜ୍ଞାନ କରୁଅଛନ୍ତି, କେହି ବା ବିଦ୍ୟା-ଗର୍ବରେ ଗର୍ବିତ ହୋଇ ମୂର୍ଖତାର ପରିଚୟ ଦେଉ-ଅଛନ୍ତି, କେହିବା ଦରିଦ୍ର ଭିକ୍ଷୁକମାନଙ୍କ ପ୍ରତି କ୍ରୋଧକଷାୟିତ ଲୋଚନ ପ୍ରଦର୍ଶନ କରି କର୍କଶ ବାକ୍ୟ ପ୍ରୟୋଗ ପୂର୍ବକ ଦରିଦ୍ରର ମସ୍ତକରେ ପାଦପ୍ରହାର କରୁଅଛନ୍ତି, କେହିବା ଅପରର ସମ୍ପତ୍ତି ଦର୍ଶନ କରି ଅବିରତ ଅନୁତାପାନଳରେ ଦଗ୍ଧ ହେଉ-ଅଛନ୍ତି, କେହିବା କେତେ ଗୁଡ଼ିଏ ସାମାନ୍ୟ କାର୍ଯ୍ୟ ସାଧନ କରି "ମୋପରି କାର୍ଯ୍ୟ କ୍ଷମ ଆଉ କେହିନାହିଁ, ମୋପରି କୌଶଳୀ ଆଉ କେହିନାହିଁ, ମୁଁ ସମସ୍ତ କରିପାରେ" ଏହିପରି ନିଜ ଗୁଣର ପ୍ରଶଂସା କରୁଅଛନ୍ତି, କେହିବା ନୀତିର ସମସ୍ତ ଅଙ୍ଗ ସାଧନ ନ କରି ସୁଦ୍ଧା ସେ ଅଦ୍ୱିତୀୟ ନୀତିମାନ୍ ବୋଲି ମନେ ମନେ ଗର୍ବ କରୁଅଛନ୍ତି, କେହିବା ନିଜ ରୂପର ସୌନ୍ଦର୍ଯ୍ୟରେ ଗର୍ବିତ ହେଉଅଛନ୍ତି, କେହି ନିଜ କୁଳ ମର୍ଯ୍ୟାଦାକୁ ସର୍ବଦା ଚାହିଁ ବୁଲୁଅଛନ୍ତି, କେହି ନିଜ ଶାରୀରିକ ବଳର ଗର୍ବ କରୁଅଛନ୍ତି କେହି ଆପଣାକୁ ଧାର୍ମିକ ଓ କେହି ବୁଦ୍ଧିମାନ୍ ବୋଲି ମନେ-

କର ଗର୍ବ କରୁଅଛୁ, କେହବା ଆପଣାକୁ ସର୍ବ ବିଷୟରେ ଦକ୍ଷ ଓ ଆପଣାର ସମସ୍ତ ସୁନ୍ଦର ମନେକରି ଅବିରତ ପରର ନିନ୍ଦା ରଚନା କରୁଅଛୁ । ଏହିପରି ଲୋକମାନେ ଉଦରପୂର ବଶବର୍ତ୍ତୀ ହୋଇ ପ୍ରତି ମୁହୂର୍ତ୍ତରେ ମୃତ୍ୟୁର ନିକଟବର୍ତ୍ତୀ ହେଉଥିଲେହେଁ ନିଜ ଜୀବନର ଅସ୍ଥିରତା ସ୍ମରଣ ନ କରି ଅବିରତ ଅବୈଧ କାର୍ଯ୍ୟରେ ରତ ହେଉଅଛନ୍ତି ।

ଶିଶୁ ସନ୍ତାନ ଏହିପରି ସମସ୍ତ ବିଷୟର ଭାବନାନନ୍ତର ଅନ୍ତର୍ଯ୍ୟାମୀ ହୋଇ ମହାମହିମ ସକଳ କାର୍ଯ୍ୟକାରଣ ଜଗଦ୍ଧାତା ଜଗନ୍ନିୟନ୍ତା ପରମେଶ୍ୱରଙ୍କର ସ୍ତବ କରେ :—



ଶିଶୁ-ସଙ୍ଗୀତ ।

ରାଗ—ଭୈରବ ଆଡ଼ତାଳୀ ।

ଦୀନନାଥ, ତୁମ୍ଭ ବିନା ଏବେ ହେଲି ମୁଁ ଅନାଥ ହେ । ପଦ ।

ଅନ୍ତରୂପେ ବସ ସକଳ ଶରୀରେ,
ନ ଦେଖଇ କେହି ତୁମ୍ଭଙ୍କୁ ସଂସାରେ,
ଯେ ଦେଖିବ ଦେଖୁ ସେ ଜ୍ଞାନ ନୟନେ
ଦେଖିପାରିବ ସେ ଧୀରେ ହେ । ୧ ।

ସତ୍ୟ ତୁମ୍ଭେ ନ୍ୟାୟ ତୁମ୍ଭେ ଯେ ଧରମ
ତୁମ୍ଭେ ଏକା ହୁଅ ସେ ବ୍ରହ୍ମ ପରମ
ତୁମ୍ଭେ ବନ୍ଦ୍ୟ ଧ୍ୟେୟ ତୁମ୍ଭେ ସର୍ବ ପୂଜ୍ୟ,
ତବ ପଦେ ନମୋନମଃ ହେ । ୨ ।

ମାତା ତୁମ୍ଭେ ପିତା ତୁମ୍ଭେ ଗୁରୁ ମୋର

ବନ୍ଧୁ ତୁମ୍ଭେ ପ୍ରଭୁ          ଅବର ସୋଦର,
ମୁକ୍ତିଦାତା ତୁମ୍ଭେ          ଶାନ୍ତିର ଆଧାର
ଭକ୍ତ-ପାପତାପହର ହେ । ୩ ।

ମୃତ୍ୟୁଅଛି ତୁମ୍ଭେ          ସକଳ ସଂସାର
ତୃଷ୍ଣାପୂର୍ଣ୍ଣ ଜଗତ          ଅବନୀର ଭାର
ଦୁଷ୍ଟ ଦୁଷ୍କର୍ମର          ଦେଇ ପ୍ରତିଫଳ,
ସୁକୃତିକୁ ଉଦ୍ଧାର ହେ । ୪ ।

ଭଙ୍ଗା ଘରପର          ଚଳୁଛି ଶରୀର
ଜମର ଛାଉଣି          ଏ ବ୍ୟାଧି ମନ୍ଦିର
କରିବେ କପଟ—          ହିଂସା-କୀଟେ କାଟି
* ତାକୁ ନାରଖାର ଧୀର ହେ । ୫ ।

ଇନ୍ଦ୍ରିୟଦଳ ସେ          ବଡ଼ ବଳୀୟାର
ଟାଣି ଉଡ଼ୁଛନ୍ତି          କରିବେ ଅନ୍ଧାର
ଝିମି-ଝିମିଙ୍ଗିଲ-          ରୂପେ ସବୁବେଳେ
ଏ ଭବ ସାଗରୁ ତାର ହେ । ୬ ।

ବାସନା-ବିଜୁଳୀ          ଛୁରି ଘନ ଘନ
ଚଛଟେ ହୃକେବେ          ଚେତନା ନସ୍ତନ,
କୁସଙ୍ଗ କରକା          କାଟି ନୀତି-ଶସ୍ୟ
ପନ୍ଥା କରିବେ ଜୀବନ ହେ । ୭ ।

ତୁମ୍ଭଙ୍କୁ ଛାଡ଼ି ଏ          ଭବଜଳେ ପଡ଼ି
ପକାଉ ଅଛି ମୁଁ          ଏବେ ଘୋର ରଡ଼ି

* ଧୀର—ଧୀରେ ଅର୍ଥାତ୍ କ୍ରମେ ।

କର୍ତ୍ତ ଭେଦ ଥରେ	ଶୁଣ ମୋ ଗୁହାରି,
ଗର୍ଜେ ରିପୁ*-ଘଡ଼ଘଡ଼ି ହେ । ୮ ।
ବହୁଣ ବିପଦ—	କୁଳ-ଝଂଝାବାତ
ବାନ୍ଧୁଁ ବାନ୍ଧୁଁ ବେଗେ	ପ୍ରତୀକାର-ବାଡ଼
ଶାନ୍ତିର ବୋଇତ	ଭାଙ୍ଗିବେ ହେଟ୍ଟାଇ
ଭବମାୟା ଶୈଳବ୍ରାତ ହେ । ୯ ।
ତେବେ କେଉଁଠାରୁ	ଶାନ୍ତି ପାଇବଇଁ,
ସୁଖବୋଲି ଯାକୁ	ଜଗତ କହଇ
ଧନ ଦାରା ସୁତ	ହେବେ ସେ କଣ୍ଟକ,
ପେଟ ପରାଣ କାଟଇ ହେ । ୧୦ ।
ଦୁର୍ଗଧାମୁଁ ଛାଁ	କଲେକ ଅନ୍ତର,
କାହା ବଳେ ବଳୀ	ଏ ଦୁଃଖି ଅନ୍ତର
ତୁମ୍ଭେ ଥାଉଁ ଏକ-	ମାତ୍ର କର୍ଣ୍ଣଧାର
ତରିବାକୁ ଏ ସାଗର ‡ ହେ । ୧୧ ।
କରମୋତେ ପାର	ଏଡ଼ବଡ଼ ବାର
ନ ଦେଇ ଫୋପାଡ଼ି	ଆହେ ଦଇତାରି,
ପୂର୍ବେ ପରା ତୁମ୍ଭେ	କହିଅଛ ବେଦ
ମାରୁଁ ଶଙ୍ଖାସୁର ମାରି ହେ । ୧୨ ।
ଦୀନ ଶିଶୁପ୍ରତି	ହୁଅ ହେ ସଦୟ,
ଜ୍ଞାନର ପ୍ରଦୀପ	ପ୍ରକାଶ ହୃଦୟ,

* ରିପୁ—ଷଡ଼୍ ରିପୁ । ‡ ସାଗର—ଭବସାଗର ।

ସଦା ସେ ଆଲୋକେ    ଦେଖିବ ତୁମ୍ଭଙ୍କୁ
ନିତ୍ୟ ସେ ଆନନ୍ଦମୟ ହେ । ୧୩ ।



ଶିଶୁର ଏହିପରି ସ୍ତବକରଣାନନ୍ତର ଅନନ୍ତ ଅନାଦି କାରଣ ଅସୀମଶକ୍ତିଶାଳୀ ଅନ୍ତର୍ଯ୍ୟାମୀ ଦୟାନିଧି ଦୈତ୍ୟାରି ଦୀନବନ୍ଧୁଙ୍କର ଆଶ୍ୱାସ-ବାଣୀ ଆକାଶରୁ ଶିଶୁର କର୍ଣ୍ଣଗୋଚର ହେଲା :—

ପରମେଶ୍ୱରଙ୍କର ପ୍ରବୋଧବାଣୀ ।

ବତ୍ସ ! ଘେନ ମୋ ଆଶ୍ୱାସ    ଅଚ୍ଛିନ୍ନ ମୁହିଁ ଭବପାଶ
ଏବେ ଆଉ ନ କର ଭାବନା ।
ମୁଁ ପରା ଜଗତ କର୍ତ୍ତା    ସକଳ ପ୍ରାଣିର ଭର୍ତ୍ତା
ପୂର୍ଣ୍ଣ କରିବ ତୁମ୍ଭ କାମନା । ୧ ।
ଏହି ଯେ ସଂସାର ଜାଣ    କ୍ରୀଡ଼ା ହେତୁ ଯା ରଚିଥିଣ
ସେହି ତୁମ୍ଭର ପରୀକ୍ଷାସ୍ଥଳ ।
ଦେଖ ଏଥି ମୋ ମହିମା    ହେଲେ ନ ମିଳେ ଯା ସୀମା
ଦେଖିବୁ ଏଥି ମୋର କୌଶଳ । ୨ ।
ସେ ମହିମା ସେ କୌଶଳ    ଦେଖିବାକୁ ଦେବଦଳ
ଅବିରତ ହୁଅନ୍ତି ଲାଳସ ।
ଅଛି ସେହି ଶାନ୍ତି-ସୁଖ    ଧର୍ମ ସଦା ଯାର ମୁଖ,
ଧର ଧୈର୍ଯ୍ୟ ନ ହୁଅ ବିରସ । ୩ ।

ପାଳ ମୋର ଉପଦେଶ    କହୁଛି କର ବିଶେଷ,
ଲଭିବୁ ଯେ ସୁଖ ଇହଧାମେ ।
ଅନ୍ତେ ଏହି ଆତ୍ମା ତୋର    ମିଶିଯିବ ପୁଣି ମୋର
ଅନନ୍ତ-ଆତ୍ମାଙ୍କେ ଅଗ୍ରମେ । ୪ ।
ନଦୀ ହବୁ ଏହିପରି    ଯାଆନ୍ତି ସିନ୍ଧୁ ସୁମରି
ସଦା ଯେ ପୂର୍ଣ୍ଣ ପୁଣି ମହାନ ।
ଏହିତ ଜୀବର ମୁକ୍ତି,    ନ ଦେଖିବୁ ଅନ ଯୁକ୍ତି,
ସାଧ ସାଧୁ * ହୋଇ ସାବଧାନ । ୫ ।
କରିବାକୁ କାର୍ଯ୍ୟ ମୋର    ହୋଇଅଛି ଜନ୍ମ ତୋର,
ଆଳସ୍ୟେ ନ କଟାଇବୁ କାଳ ।
ତୋର ଜୀବନକୁ ଜାଣ    କ୍ଷଣକାଳ ପରିମାଣ,
ବଢିବା ଅମ୍ବୁ-ଗଣ୍ଡିବା ଭଳି । ୬ ।
୧ କେବଳ କାର୍ଯ୍ୟ ମାତ୍ରେ    ଦେବେ ତୁମ୍ଭ ପରିଚୟ
'ଉତ୍କଳ ତୁମ୍ଭେ ଏ କାଳରେ' ।

* ସାଧ—କର୍ତ୍ତବ୍ୟ କାର୍ଯ୍ୟ ।

୧ କେବଳ.....ଦେହରେ—ପୁଷ୍କରଣୀ ଘାଟକୁ ଅନେକ ଲୋକ ଯିବା ଆସିବା କରନ୍ତି ମାତ୍ର କେଉଁ ବ୍ୟକ୍ତି ସେଠାକୁ ଆସିଥିଲେ ତାହା ଜାଣିବାର କୌଣସି ଚିହ୍ନ ନ ଥାଏ କିନ୍ତୁ ଯେଉଁ ବ୍ୟକ୍ତି ପୋଖରୀଘାଟରେ ଥିବା ମଣ୍ଡପକାନ୍ଥରେ ତାଙ୍କ ନାମଟି ଲେଖିଦେଇଥାନ୍ତି ସେହି ବ୍ୟକ୍ତି ଆସିଥିବାର

ଛଏ କେବେ ଦେଖୁ ଦେଖା   ଜଣାଏ ଅଙ୍ଗାର ବେଖା
ସଚିତାର୍ଥ ମଣ୍ଡପ ଦେହରେ । ୭ ।
୨ ଲୌହ-ଶକଟ-ପ୍ରକୋଷ୍ଠ   ଟଙ୍କାଦେଇ କର କୋଠ
ନ କଲେ ବୋଝାଇ ଅକାରଣ ।
କେତେକ କର୍ମ ମହତ   ନ କଲେ ଜୀବନେ ହତ
ହେବୁ ଜନେ ଭୁଲ ସେ ଭେଷନ । ୮ ।
କାଳ ଚକ୍ରେ ଅବିରତ   ନାହିଁ ପାର ଅଦଅନ୍ତ
କାହାରିକୁ ନ ଅନାଇ ଚଳେ ।
ସରିତ-ସ୍ରୋତ ପବନ ·   କୁଅର-ଦନ୍ତୀ ଯେସନ,
ସ୍ୱାଙ୍ଗଗତ ରୁଦ୍ଧ ସମ୍ଭବିଲେ । ୯ ।
ମାତ୍ର ଶତ ଶତ ପ୍ରଚ୍ଛ—   ଚକ୍ରେଚ କାଳର ଗଛ
ରୁଦ୍ଧନୁହେ ଭଲ କରି ଭାବ ।
'କାଲି କାଲି' ବୋଲି ଖାଲି   କାଳକୁ ନ ଦେବୁ ଟାଳି,
ବେଳୁଁ କଲେ ହେବ ଫଳଲାଭ । ୧୦ ।
'କାଲି' ବୋଲି ରଖୁ ଯାହା   ନ ହେବ ତୋ ଅପୂର୍ଣ୍ଣ ତାହା,
ସ୍ଥିର ବର୍ତ୍ତମାନେ କର କାର୍ଯ୍ୟ ।

---

ଜଣାଯାଏ । ସେହିପରି ଅବିଚ୍ଛିନ୍ନଭାବେ ଚାଲିଥିବା ସମୟ-ମଧ୍ୟରେ ଅନେକ ଲୋକ ଜନ୍ମୁଅଛନ୍ତି ଜନ୍ମୁ ଯେଉଁ ବ୍ୟକ୍ତି କୌଣସି ମହତ କାର୍ଯ୍ୟ କରନ୍ତି କେବଳ ତାଙ୍କର ନାମ ରହିଯାଏ ।

୨ ଲୌହ···ଅକାରଣ—ରେଲଗାଡ଼ି କୋଠରି ଟିକେଟ୍-କର ବୋଝାଇ ନ କଲେ ଟଙ୍କା ଫେରସ୍ତ ମିଳେନାହିଁ ।

ମୋଠାରେ ଫଳେ ନିର୍ଭର ଅବିରତ କାର୍ଯ୍ୟ କର
ଜଗତେ ଭେବେ ତୁ ହେବୁ ଆର୍ଯ୍ୟ । ୧୧ ।
ସୁବିବେକ ବେଦଧାରୀ ପରିଶ୍ରମ ପ୍ରତିହାରୀ
ସଜ୍ଜିତ ତୋ ଶରୀର ରକ୍ଷଣେ ।
କାର୍ଯ୍ୟେ ତୁ ବଢ଼ାଇ ପ୍ରୀତି କରିବା ନ କରି ନୀତି
ଦେଖୁଥିବ ସେ ଯନ୍ତ୍ର ଈକ୍ଷଣେ । ୧୨ ।
* ସେ ବେଳେ ପ୍ରହାର କରି ଦୂରେ ଦେବ ଦୂର କରି
ଘୋର ପ୍ରତିହାରୀ ରିପୁ-ପୁଞ୍ଜେ ।
ତେଣୁ ତୋର ଦୁର୍ଗାଧର ହେବ ଶତ୍ରୁ-ଅଗୋଚର
ରହିବୁ ତୁ ଶାନ୍ତିପୂର୍ଣ୍ଣ କୁଞ୍ଜେ । ୧୩ ।
ଧ୍ୟଜନାଙ୍କୁ ଭକ୍ତିପର ଥିବୁ ସଦା ଦୁର୍ଗାଧର
ସାମ୍ପ୍ରତିକ କୃତ୍ୟ କରି ଶେଷ ।
ଦୁଃଖରେ ଅବା ସୁଖରେ ରହିବୁ ଏକ ଭାବରେ
ବିଚଳିତ ନ ହୋଇ ବିଶେଷ । ୧୪ ।
ସଂସାରର ସଙ୍ଗେ ଥାଇ ଆଚରି ଛଦ୍ମନ୍ୟାସୀ
ରହିଥିବୁ ଉଦାସୀନ ଭାବେ ।
ଧର୍ମମଣି-ସାଧୁସଙ୍ଗେ ମାତି ଗୀତ ରସରଙ୍ଗେ
ବାନ୍ଧିବୁ ବସୁଧା ସଦଭାବେ । ୧୫ ।

---

* ବେଦ—ସୁକାର୍ଯ୍ୟ । ରିପୁପୁଞ୍ଜ—ଦେହ ରିପୁ ଜନିତ ଦୋଷସକଳ । ଦୁର୍ଗାଧର—ବ୍ୟାଧି ମନ୍ଦିର ଶରୀର । ରହିବୁ ....କୁଞ୍ଜେ—ଶାନ୍ତ ଜୀବନ ଭୋଗ କରିବୁ ।

ମାତାପିତା ହିତବାଣୀ          ଜୀବନର ହିତକାରୀ
ଯତନରୁ ତାହା ସତତ ଚିନ୍ତେ ।
ଗୁରୁ ଦେଲେ ଉପଦେଶ          ଯେମନ୍ତ ସାର ବିଶେଷ
ସାଧିବି ତା ଅବଶ୍ୟ ଚିତ୍ତରେ । ୧୬ ।
ସୁଶାସ୍ତ୍ର କରି ପଠନ          କରି ଚିତ୍ତ ସଂଯମନ,
କୁଶାସ୍ତ୍ରେ ନ ବଳାଇବି ମତି ।
ସେ ଶାସ୍ତ୍ରୁଁ ସାର ଉଦ୍ଧାର,          ସୁଜ୍ଞାନେ ତାହା ବିଚାର,
ତତ୍ତ୍ୱଜ୍ଞାନେ ପାଇବି ଶକତି । ୧୭ ।
ଅହିଂସା ସତ୍ୟ ତିତିକ୍ଷା          ମୋ ନିକଟେ ଯଥାଭିକ୍ଷା
ଦୟା ଦମ ସମ ଦରଶିତା ।
ସ୍ଥିର ବିଶ୍ୱାସ ଏମାନ          ଧର୍ମର ଅଙ୍ଗ ପ୍ରଧାନ,
ସର୍ବେ ମୋର ସେବା ମନୋନୀତା । ୧୮ ।
✱ ଧର ଏହିଗୁଣ ଶସ୍ତ୍ର          କରିବ ସେନା ପ୍ରଚଣ୍ଡ
'କ୍ରୋଧ ଲୋଭ' ଭୟେ ପଳାଇବେ ।
ପାଇବୁ ତୁ ଶକ୍ତି ଧନ          ଶାନ୍ତି-ସନ୍ତୋଷ କାରଣ—
ଚତୁର୍ବର୍ଗ ଅନ୍ୟେ ଯା ନ ପାଇବେ । ୧୯ ।
କର୍ତ୍ତବ୍ୟ ଅବଧାରଣ          ଅକର୍ତ୍ତବ୍ୟ ବରଜନ
କର ତୋର ସାଧାରଣ ଜ୍ଞାନେ ।
ସାଧନ କରିବୁ ତାହା          ମୁଁ ଯେ ଦେଇଥିବି ସାହା
ସର୍ବକାର୍ଯ୍ୟେ ଯେନ ମୋତେ ଧ୍ୟାନେ । ୨୦ ।

ସମାପ୍ତ ।

✱ ଶସ୍ତ୍ରପଦ ଅହିଂସାଠାରୁ ସ୍ଥିର ବିଶ୍ୱାସ ପର୍ଯ୍ୟନ୍ତ ସମସ୍ତ ସେମାନଙ୍କୁ ବୁଝାଉଅଛି ।

Printed B. Sarangi the O. P. pr sss, Cuttack,

# ଶୁଦ୍ଧିପତ୍ର ।

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଭୂମିକା | ୧ ମ ପଂକ୍ତି | ବାଲ୍ୟବସ୍ଥାରେ | ବାଲ୍ୟାବସ୍ଥାରେ |
| " | | ମାନବ ଜୀବନୀସ୍ୱରୂପ | ସାଧାରଣ ମାନବ ଜୀବନୀ ସ୍ୱରୂପ |
| " | | ୨ୟ ଖଣ୍ଡ | ୨ୟ ଭାଗ |
| " | | ଅପଠ | ଅପଠିତ |
| ୧ | ୪ | ପଢୀଠାରୁ | ପଢିଠାରୁ |
| ୨ | ୨ | ମୂଳାଧର | ମୂଳାଧାର |
| ୨ | ୩ | ଅଦ୍ଭୁତକୌଶଳ | ଅଦ୍ଭୁତକୌଶଳୀ |
| " | ୭ | ଗୃହସ୍ଥସ୍ୱାମୀଙ୍କର | ଗୃହସ୍ଥସ୍ୱାମୀଙ୍କର |
| ୩ | ପଦ୍ୟରେ ୨ | ଅଦଭୁତ | ଅଦ୍ଭୁତ |
| ୫ | ୨୧ | ବିଯାଦ | ବିଷାଦ |
| ୬ | ୬ | କାଯ୍ୟରେ | କାର୍ଯ୍ୟରେ |
| ୭ | ୪୦ | ଜଗଦ୍ବାସୀଙ୍କର | ଜଗଦ୍ବାସିଙ୍କର |
| " | ୧୦ | ଉମିଷ୍ଠା | ଉମିସ୍ରା |
| ୮ | ୧ | ତସ୍କର ନିଶାଚର ପ୍ରବୃତ୍ତ | ତସ୍କରପ୍ରବୃତ୍ତ ନିଶାଚର |
| " | ୧୧ | ନିମିଲତ | ନିମୀଲିତ |
| " | ୧୨ | ଉନ୍ମିଲତ | ଉନ୍ମୀଲିତ |
| " | ୨୧ | ଏବଳ | ଏବା |
| ୯ | ୭ | ବର୍ତ୍ତମାନ୍ | ବର୍ତ୍ତମାନ |
| ୧୨ | ୧୯ | ବିରଳ ବାସ | ବିରଳ ପ୍ରାସାଦରେ ବାସ |
| ୧୩ | ୧୬ | ସାଗରାଭିମୁଖରେ | ସାଗରାଭିମୁଖରେ |

| | | | |
|---|---|---|---|
| | ୧୧ | ଜଲପ୍ସୀ | ଜଲୀୟ |
| ୧୭ | ୨୧ | ପ୍ରାଣୀମାନଙ୍କର | ପ୍ରାଣିମାନଙ୍କର |
| " | " | ଏକକାଳନ | ଏକକାଳୀନ |
| ୧୮ | ୧ | କର୍ମଚାରଗଣ | କର୍ମଚାରୀଗଣ |
| " | ୫ | ଭୂମିକମ୍ପୋତ୍ପାଦନ | ଭୂମିକମ୍ପୋତ୍ପାଦକ |
| ୧୯ | ୩ | ତୂଲ୍ୟ | ତୁଲ୍ୟ |
| ୧୯ | ୧୭ | କରୁଅଛନ୍ତ | ଜଙ୍ଗଲରେ ସ୍ୱଚ୍ଛନ୍ଦରେ କ୍ରୀଡ଼ା କରୁଅଛନ୍ତ |
| ୨୦ | ୧ | ବାସଗ୍ରହ | ବାସଗୃହ |
| ୨୧ | ୧୯ | ହୋଇଥାଏ | ହୋଇଯାଏ |
| ୨୨ | ୧ | ଅଥରୋଷ୍ଟ | ଅଥର୍ଗ୍ରୀଷ୍ଟ |
| " | ୧୦ | ବ୍ୟଚ୍ଚ ପ୍ରତ୍ତ | ବ୍ୟକ୍ତିସ୍ୱତ |
| " | ୧୫ | ଅନିସ୍ଥିତ | ଅନସ୍ଥିତ |
| ୨୨ | ୧୬ | ରାଜା | କାହିଁରଜା |

---

ପୁସ୍ତକ ପ୍ରାପ୍ତିସ୍ଥାନ ।

ଗ୍ରନ୍ଥକାର ରାଜକନକା ପୋଃ ଅଃ ରାଜକନକା କଟକ ।
କଟକ - ଅରୁଣୋଦୟ ପ୍ରେସ, ଓଡ଼ିଶା ପେଟ୍ରିୟଟ ପ୍ରେସ
ମହମ୍ମଦିଆ ବଜାର । ପୋଃ ଚାନ୍ଦନୀଚୌକ; କଟକ ।